# ଭାରତରେ ଅଗଷ୍ଟ ବିପ୍ଳବ ଓ ତାହାର ପ୍ରଭାବ

ଗୁରୁକଲ୍ୟାଣ ମହାପାତ୍ର

**ଭା**ରତର ସ୍ୱାଧୀନତା ସଂଗ୍ରାମର ଇତିହାସରେ ଅଗଷ୍ଟ ମାସର ଭୂମିକା ଥିଲା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । ଅଗଷ୍ଟ ମାସ ୧୪ ତାରିଖରେ ପାକିସ୍ତାନ ଓ ୧୫ ତାରିଖରେ ଭାରତ ନିଜ ନିଜର ସ୍ୱାଧୀନତା ଦିବସ ପାଳନ କରି ଆସୁଛନ୍ତି ୬୧ ବର୍ଷ ଧରି । ଅଖଣ୍ଡ ଭାରତ ଦ୍ୱିଖଣ୍ଡିତ ହୋଇ ଭାରତ ଓ ପାକିସ୍ତାନ ହୋଇଗଲା ୧୯୪୭ର ସେହି ଅଗଷ୍ଟ ୧୪ରେ । ସେହି ଦିନରୁ ହିଁ ଭାରତରେ ବ୍ରିଟିଶ ଶାସନର ଅବସାନ ଘଟିଛି । **୧୯୪୨ ଅଗଷ୍ଟ ୭, ୮ ଓ ୯ରେ ସେହି 'ଭାରତଛାଡ଼' କିମ୍ବା 'କର ବା ମର' ଆନ୍ଦୋଳନ ମହାବିପ୍ଳବର ଆଖ୍ୟା ନେଇଛି । ତାହା ହିଁ ଭାରତର ଅଗଷ୍ଟ ବିପ୍ଳବ ବା କ୍ରାନ୍ତି ଦିବସ, ଯାହା ଗଣ ବିପ୍ଳବର ଆଖ୍ୟା ପାଇଛି ।** ଏହା ପୂର୍ବରୁ ୧୯୩୦ର ଲବଣ ସତ୍ୟାଗ୍ରହରେ ମଧ୍ୟ ଓଡ଼ିଶାର ଭୂମିକା ଥିଲା ଗୌରବୋଜ୍ଜ୍ୱଳ । ବଡ଼ ବିଚିତ୍ର କଥା ଯେ, ୧୭୫୭ ମସିହାରେ ଅଗଷ୍ଟ ମାସର ଅବ୍ୟବହିତ ପୂର୍ବରୁ ବଙ୍ଗ ଅଞ୍ଚଳରେ ଯେଉଁ ଇତିହାସ ପ୍ରସିଦ୍ଧ ପଲାସୀ ଯୁଦ୍ଧ ସଂଘଟିତ ହୋଇଥିଲା, ତାହା ଥିଲା ଭାରତରେ ବ୍ରିଟିଶ ଶାସନ ବିସ୍ତାରର ପ୍ରଥମ ପଦକ୍ଷେପ । ବ୍ରିଟିଶ ସରକାରଙ୍କ ପ୍ରତିନିଧି ଲର୍ଡ଼ କ୍ଲାଇବଙ୍କ ଚକ୍ରାନ୍ତ ଓ ବିଶ୍ୱାସଘାତକତାର ଶିକାର ହୋଇ ନବାବ ସିରାଜ ଉଦ୍ଦୌଲା ଯୁଦ୍ଧରେ ପରାସ୍ତ ହୋଇଥିଲେ । ବକ୍ସାର ଯୁଦ୍ଧ ପରେ କ୍ଲାଇବ୍ ବଙ୍ଗ-ବିହାର-ଓଡ଼ିଶାର ଦେୱାନୀ ଗ୍ରହଣ କରି ଭାରତରେ ବ୍ରିଟିଶ ଶାସନକୁ ଭଲଭାବେ ବିସ୍ତାର କରିଥିଲେ । ଓଡ଼ିଶାରେ ଅଗଷ୍ଟ ବିପ୍ଳବର ପ୍ରଭାବରେ ପରବର୍ତ୍ତୀ ମାସରେ ୧୯୪୨ ସେପ୍ଟେମ୍ବର ୨୮ ତାରିଖରେ ଭଦ୍ରକର ଇରମ ଭୂମିରେ ଯେଉଁ ଗୁଳିକାଣ୍ଡ ହୋଇଥିଲା, ତାହା ଓଡ଼ିଶାର ଦ୍ୱିତୀୟ ଜାଲିଆନାୱାଲାବାଗ ଭାବେ ଆଖ୍ୟାୟିତ ।

ଓଡ଼ିଶାରେ ଅଗଷ୍ଟ ବିପ୍ଳବର ପ୍ରଭାବରେ ପରବର୍ତ୍ତୀ ମାସରେ ୧୯୪୨ ସେପ୍ଟେମ୍ବର ୨୮ ତାରିଖରେ ଭଦ୍ରକର ଇରମ ଭୂମିରେ ଯେଉଁ ଗୁଳିକାଣ୍ଡ ହୋଇଥିଲା, ତାହା ଓଡ଼ିଶାର ଦ୍ୱିତୀୟ ଜାଲିଆନାୱାଲାବାଗ ଭାବେ ଆଖ୍ୟାୟିତ ।

**ଅଗଷ୍ଟ ଆନ୍ଦୋଳନର ପୂର୍ବ ପ୍ରସ୍ତୁତି**

ଅବଶ୍ୟ ଅଗଷ୍ଟ ବିପ୍ଳବ ବା ଆନ୍ଦୋଳନ ଭାରତର ସ୍ୱାଧୀନତା ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା, କିନ୍ତୁ ଏହା ପୂର୍ବରୁ ସେତେବେଳେ ଭାରତର ସ୍ୱାଧୀନତା ପାଇଁ ଗାନ୍ଧିଜୀଙ୍କ ନେତୃତ୍ୱରେ ମଧ୍ୟ ଚାଲିଥିଲା ଜୋର୍‌ଦାର ଅହିଂସା ଆନ୍ଦୋଳନ । **୧୯୩୦ ମସିହା ଜାନୁଆରୀ ୨୬ ତାରିଖକୁ ସେତେବେଳେ ସମଗ୍ର ଭାରତରେ 'ସ୍ୱାଧୀନତା ଦିବସ' ଭାବେ ପାଳନ କରାଯିବାକୁ ସଂଗ୍ରାମୀମାନଙ୍କୁ ଆହ୍ୱାନ ଦିଆଗଲା । 'ସ୍ୱାଧୀନତା ଆମର ମୌଳିକ ଦାବି' ବୋଲି ଜଣାଇ ଭାରତବାସୀ ଆନ୍ଦୋଳନ ପାଇଁ ଶପଥ ଗ୍ରହଣ କଲେ ।** ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଏହା ଥିଲା ପ୍ରଥମ ଆଇନ ଅମାନ୍ୟ ଆନ୍ଦୋଳନ । ସେହି ଆନ୍ଦୋଳନ ୧୯୩୨ ପର୍ଯ୍ୟନ୍ତ ଚାଲିଥିଲା । ଆନ୍ଦୋଳନ ସମୟରେ ୧୯୩୦ ମସିହା ମାର୍ଚ୍ଚ ୧୨ ତାରିଖରେ ମହାତ୍ମା ଗାନ୍ଧୀ ତାଙ୍କର ସାବରମତୀ ଆଶ୍ରମରୁ ଗୁଜରାଟର ସମୁଦ୍ର ତଟବର୍ତ୍ତୀ ଦାଣ୍ଡି ଯାଏଁ ଯାତ୍ରା କରିଥିଲେ - ବ୍ରିଟିଶ ସରକାରଙ୍କ ଲବଣ ଆଇନ ଭଙ୍ଗ କରି ସମୁଦ୍ର ପାଣିରୁ ଲୁଣ ବା ଲବଣ ତିଆରି କରିବାକୁ । ଅଗଷ୍ଟ ବିପ୍ଳବ ବା ଆନ୍ଦୋଳନ ପୂର୍ବରୁ ଗାନ୍ଧିଜୀଙ୍କ ଆହ୍ୱାନରେ ଏହି ପ୍ରତୀକାତ୍ମକ ଆନ୍ଦୋଳନ ଦେଶବାସୀଙ୍କୁ ଉନ୍ମାଦିତ କରି ଦେଇଥିଲା । ଏହାର ପ୍ରଭାବ ଉପକୂଳ ଓଡ଼ିଶାର କଟକ, ପୁରୀ ଓ ବାଲେଶ୍ୱର ଜିଲ୍ଲାରେ ବିଶେଷ କରି ବାଲେଶ୍ୱରର ଇଞ୍ଚୁଡ଼ିଠାରେ ଉପଲବ୍ଧ ହୋଇଥିଲା । ଓଡ଼ିଶାରେ ଲୁଣ ମାରି ଅନେକ ଜୀବିକା ନିର୍ବାହ କରୁଥିଲେ । ଓଡ଼ିଶାରୁ ପଶ୍ଚିମବଙ୍ଗକୁ ଶସ୍ତାରେ ବହୁ ଲୁଣ ବିକ୍ରୟ ପାଇଁ ଯାଉଥିଲା । ବ୍ରିଟିଶ ସରକାର ଲୁଣ ମାରିବାକୁ ବେଆଇନ ବୋଲି ଘୋଷଣା କରିବାରୁ ଓଡ଼ିଶାର ଲୋକେ ଉତ୍ତେଜିତ ହୋଇଯାଇଥିଲେ । ଗାନ୍ଧିଜୀଙ୍କ ଏ ଆହ୍ୱାନ ତେଣୁ ମନ୍ତ୍ରବତ୍ କାମ ଦେଲା ।

ମହାତ୍ମା ଗାନ୍ଧୀ ୧୯୩୦ ଅପ୍ରେଲ ୬ ତାରିଖରେ ଦାଣ୍ଡିଠାରେ ବ୍ରିଟିଶ ସରକାରଙ୍କ ଲୁଣ ଆଇନ ଭାଙ୍ଗି ଥିଲେ । ଏଥିପାଇଁ ମାର୍ଚ୍ଚ ୧୨ରୁ ସେ ଦାଣ୍ଡିଯାତ୍ରା ଆରମ୍ଭ କରିଥିଲେ । **ଗାନ୍ଧିଜୀଙ୍କର ଆହ୍ୱାନ ଅନୁଯାୟୀ ଓଡ଼ିଶାରେ ସେଦିନ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ସଂଗ୍ରାମୀମାନେ ଇଞ୍ଚୁଡ଼ିଠାରେ ପହଞ୍ଚିବାର ଥିଲା । ମାତ୍ର ପୋଲିସ୍ ଧରି ନେଇଥିଲେ । ସତ୍ୟାଗ୍ରହ ଦେଶବ୍ୟାପୀ ଆରମ୍ଭ କରିବାକୁ ଗାନ୍ଧିଜୀ ଆହ୍ୱାନ ଦେବାରୁ ଓଡ଼ିଶାରେ ଦାଣ୍ଡିଯାତ୍ରାର ପ୍ରତୀକ ଭାବେ ଇଞ୍ଚୁଡ଼ିଠାରେ ଆଚାର୍ଯ୍ୟ ହରିହର ଦାସଙ୍କ ନେତୃତ୍ୱରେ ସତ୍ୟାଗ୍ରହ**

**ଆରମ୍ଭ ହେଲା ।** ବାଲେଶ୍ୱର ସହର ଅନ୍ତର୍ଗତ ପରିମିଟ୍ କୋଠିରେ ସତ୍ୟାଗ୍ରହର ଶିବିର ହୋଇଥିଲା । ୧୯୩୦ ଅପ୍ରେଲ ୧୨ ତାରିଖ ସନ୍ଧ୍ୟାରେ ପ୍ରାର୍ଥନା ଶେଷ କରି ସତ୍ୟାଗ୍ରହୀମାନେ ଆଚାର୍ଯ୍ୟ ମହାଶୟଙ୍କ ନେତୃତ୍ୱରେ ଇଞ୍ଚୁଡ଼ି ଅଭିମୁଖେ ପଦଯାତ୍ରାରେ ବାହାରିଥିଲେ । ଇଞ୍ଚୁଡ଼ିର ଏହି ସତ୍ୟାଗ୍ରହରେ ଯୋଗଦେବା ଲାଗି ଓଡ଼ିଶାର ସବୁ ଅଞ୍ଚଳରୁ ଦଳ ଦଳ ହୋଇ ସଂଗ୍ରାମୀମାନେ ଆସିଥିଲେ । କଟକରୁ ଆସିଥିବା ସଂଗ୍ରାମୀମାନଙ୍କର ପରିଚୟ ଥିଲା ଲୌହସ୍ତମ୍ଭ ବାହିନୀ ଭାବେ । ସେହିପରି **ପୁରୀରୁ ପତିତପାବନ ବାହିନୀ, ସମ୍ବଲପୁରରୁ ଅନ୍ୟ ଏକ ବାହିନୀ ଏବଂ ଓଡ଼ିଶାରେ ରହୁଥିବା ଗୁଜୁରାଟୀମାନଙ୍କର ମଧ ଗୋଟିଏ ବାହିନୀ ଇଞ୍ଚୁଡ଼ି ସତ୍ୟାଗ୍ରହରେ ଯୋଗ ଦେଇଥିଲେ । ଓଡ଼ିଶାରେ ପ୍ରଥମେ କୁଳବଧୂମାନେ ମୁଣ୍ଡର ଓଢ଼ଣା କାଢ଼ି ଘରୁ ରାସ୍ତା ଉପରକୁ ବାହାରି ଆସି ଆଚାର୍ଯ୍ୟ ମହାଶୟ ଓ ତାଙ୍କର ସତ୍ୟାଗ୍ରହୀମାନଙ୍କୁ ଧୂପ ଓ ଅର୍ଘ୍ୟଦ୍ୱାରା ବନ୍ଦାପନା କରିଥିଲେ । ଓଡ଼ିଶାର ସ୍ୱାଧୀନତା ଆନ୍ଦୋଳନ ଇତିହାସରେ ସମ୍ଭବତଃ ଏହା ହିଁ ପ୍ରଥମ ନାରୀ ଜାଗରଣ ।**

ଅଗଷ୍ଟ ବିପ୍ଳବକୁ ଦମନ କରିବାକୁ ବ୍ରିଟିଶ ଶକ୍ତି ବହୁ ଚେଷ୍ଟା କରିଥିଲେ । ନେତାମାନଙ୍କୁ ଗିରଫ କରି ବ୍ରିଟିଶ ପୋଲିସ ଏହି ଆନ୍ଦୋଳନକୁ ନେତୃତ୍ୱହୀନ କରିପକାଇଥିଲା । ମାତ୍ର ଏହି ଆନ୍ଦୋଳନ ଆପଣାଛାଏଁ ଏକ ଗଣଆନ୍ଦୋଳନ ଭାବେ ନିଆଁ ପରି ଜଳି ଉଠିଥିଲା । ସାରା ଭାରତ ଏହି ଆନ୍ଦୋଳନ ବା ବିପ୍ଳବରେ ପ୍ରକମ୍ପିତ ହୋଇପଡ଼ିଲା ।

୧୯୩୦ରୁ ୧୯୩୨ ଯାଏଁ ପୁରୀ ଜିଲ୍ଲାର କାକଟପୁର, ଅସ୍ତରଂଗ, ଭଦ୍ରକର ବିଦେଇପୁର ପ୍ରଭୃତି ଅଞ୍ଚଳରେ ଆଇନ ଅମାନ୍ୟ ଆନ୍ଦୋଳନ ହୋଇଥିଲା । କଟକ ଜିଲ୍ଲାର କୁଜଙ୍ଗରେ ମଧ୍ୟ ଏହାର ପ୍ରତିଫଳନ ଘଟିଥିଲା । ଏହି ଆନ୍ଦୋଳନରେ ବ୍ରିଟିଶ ପୋଲିସ୍ ସତ୍ୟାଗ୍ରହୀମାନଙ୍କ ଉପରେ ମାଡ଼ ଦେବାରୁ ଏହାର ପ୍ରତିବାଦ କରି ତତ୍କାଳୀନ ବିହାର ଓଡ଼ିଶା କାଉନ୍ସିଲ (ବ୍ୟବସ୍ଥାପକ ସଭା)ର ଉପ ସଭାପତି ଭାଗବତ ପ୍ରସାଦ ମହାପାତ୍ର (କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ ପିତା) ନିଜ ପଦବୀରୁ ଇସ୍ତଫା ପ୍ରଦାନ କରି ଏକ ଉଜ୍ଜ୍ୱଳ ଦୃଷ୍ଟାନ୍ତ ସୃଷ୍ଟି କରିଥିଲେ ।

**ଭାରତଛାଡ଼ ଆନ୍ଦୋଳନ ବା ଅଗଷ୍ଟ ବିପ୍ଳବ**

୧୯୪୨ ଅପ୍ରେଲ ୨୨ ତାରିଖରେ ଇଂରେଜମାନେ ଭାରତ ଛାଡ଼ି ଚାଲିଯିବା ପାଇଁ ବ୍ରିଟିଶ ସରକାରଙ୍କ ନିକଟକୁ ଗାନ୍ଧିଜୀ ପତ୍ର ଲେଖିଥିଲେ । ଭାରତରେ ସ୍ୱାଧୀନତା ପାଇଁ ଅହିଂସା ଆନ୍ଦୋଳନ କରୁଥିବା କଂଗ୍ରେସ ଓ ଗାନ୍ଧିଜୀ ବାରମ୍ବାର ଏ ବିଷୟରେ ଅନୁରୋଧ କରିଥିଲେ ମଧ ତତ୍କାଳୀନ ବ୍ରିଟିଶ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲ୍ ଏହାକୁ ଆଦୌ ଗୁରୁତ୍ୱ ଦେଇ ନଥିଲେ । ଫଳରେ ୧୯୪୨ ଜୁଲାଇ ୧୪ ତାରିଖରେ କଂଗ୍ରେସ କାର୍ଯ୍ୟକାରୀ କମିଟି ଗାନ୍ଧିଜୀଙ୍କଦ୍ୱାରା ଏକ ବିରାଟ ବିପ୍ଳବ ପାଇଁ ୱାର୍ଦ୍ଧାଠାରେ ନିଷ୍ପତ୍ତି ନେଇଥିଲେ । ଏଥିପାଇଁ **ବମ୍ବେ (ମୁମ୍ବାଇ)ଠାରେ ୧୯୪୨ ଅଗଷ୍ଟ ୭ ଏବଂ ୮ ତାରିଖରେ ନିଖିଳ ଭାରତ କଂଗ୍ରେସ କମିଟିର ଏକ ଗୁରୁତ୍ୱପୂର୍ଣ୍ଣ ଅଧିବେଶନରେ ଅଗଷ୍ଟ ମହାବିପ୍ଳବ ପାଇଁ ଚୂଡ଼ାନ୍ତ କାର୍ଯ୍ୟକ୍ରମ ହେବ ବୋଲି ସ୍ଥିର ହେଲା । ଏପରି ବଡ଼ ଧରଣର ଅଗଷ୍ଟ ବିପ୍ଳବର ପ୍ରସ୍ତୁତି ବ୍ରିଟିଶ ସରକାରଙ୍କୁ ବିଚଳିତ କରି ପକାଇଲା । ତେଣୁ ବିପ୍ଳବ ଆରମ୍ଭ ହେବା ପୂର୍ବରୁ ଦେଶର ସଂଗ୍ରାମୀମାନଙ୍କୁ ଗିରଫ କରି କଂଗ୍ରେସକୁ ବେଆଇନ ଘୋଷଣା କରିବା ବିଷୟରେ ବ୍ରିଟିଶ ସରକାର ଚିନ୍ତା କରୁଥାଏ ।**

୧୯୪୨ ଅଗଷ୍ଟ ୭ ତାରିଖରେ ପୂର୍ବ ନିର୍ଦ୍ଧାରିତ କାର୍ଯ୍ୟକ୍ରମ ଅନୁଯାୟୀ ବମ୍ବେ (ମୁମ୍ବାଇ)ଠାରେ ନିଖିଳ ଭାରତ କଂଗ୍ରେସ କମିଟିର ଅଧିବେଶନ ତତ୍କାଳୀନ କଂଗ୍ରେସ ସଭାପତି ମୌଲାନା ଆବୁଲ୍ କାଲାମ ଆଜାଦଙ୍କ ସଭାପତିତ୍ୱରେ ହୋଇଥିଲା । ଅହିଂସା ଉପାୟରେ ଆଗାମୀ ବିପ୍ଳବ ପାଇଁ ପ୍ରସ୍ତୁତ ରହିବାକୁ ମହାତ୍ମା ଗାନ୍ଧୀ ସେଠାରେ ଆହ୍ୱାନ ଦେଇଥିଲେ । ତାଙ୍କର 'କର ବା ମର' ଆହ୍ୱାନ କୋଟି କୋଟି ଭାରତୀୟଙ୍କ ହୃଦୟରେ ପ୍ରତିଧ୍ୱନିତ ହୋଇଥିଲା । କାଲାମ ଓ ନେହରୁ ପ୍ରଭୃତି ଏହି ଭାରତଛାଡ଼ ଆନ୍ଦୋଳନ ବା ଅଗଷ୍ଟ ବିପ୍ଳବର ବ୍ୟାପକତା ଉପରେ ଗୁରୁତ୍ୱାରୋପ କରିଥିଲେ । ତହିଁ ପରଦିନ ୧୯୪୨ ଅଗଷ୍ଟ ୮ ତାରିଖରେ 'ଭାରତଛାଡ଼'ର ଏହି ପ୍ରସ୍ତାବ କଂଗ୍ରେସ କମିଟିଦ୍ୱାରା ଗୃହୀତ ହୋଇଥିଲା । ଗାନ୍ଧିଜୀଙ୍କ ନେତୃତ୍ୱରେ ସ୍ୱାଧୀନତା ପର୍ଯ୍ୟନ୍ତ ଏ ଆନ୍ଦୋଳନକୁ ଜାରି ରଖିବାକୁ ପ୍ରସ୍ତାବରେ ଉଲ୍ଲେଖ କରାଯାଇଥିଲା ।

ଗାନ୍ଧିଜୀ ଆନ୍ଦୋଳନକୁ ବ୍ୟାପକ କରିବାକୁ ପ୍ରସ୍ତୁତ ହେବା ବେଳକୁ ତହିଁ ଆରଦିନ ଅଗଷ୍ଟ ୯ ତାରିଖ ପ୍ରତ୍ୟୁଷରେ ତାଙ୍କ ସମେତ କଂଗ୍ରେସର ତୁଙ୍ଗନେତାମାନଙ୍କୁ ବ୍ରିଟିଶ ପୋଲିସ୍ ଗିରଫ କରିନେଲେ । ଅଗଷ୍ଟ ବିପ୍ଳବକୁ ଦମନ କରିବାକୁ ବ୍ରିଟିଶ ଶକ୍ତି ବହୁ ଚେଷ୍ଟା କରିଥିଲେ । ନେତାମାନଙ୍କୁ ଗିରଫ କରି ବ୍ରିଟିଶ ପୋଲିସ ଏହି ଆନ୍ଦୋଳନକୁ ନେତୃତ୍ୱହୀନ କରିପକାଇଥିଲା । ମାତ୍ର ଏହି ଆନ୍ଦୋଳନ ଆପଣାଛାଏଁ ଏକ ଗଣଆନ୍ଦୋଳନ ଭାବେ ନିଆଁ ପରି ଜଳି ଉଠିଥିଲା । ସାରା ଭାରତ ଏହି ଆନ୍ଦୋଳନ ବା ବିପ୍ଳବରେ ପ୍ରକମ୍ପିତ ହୋଇପଡ଼ିଲା । ଅଗଷ୍ଟ ୩୧ ତାରିଖରେ ଭାରତରେ ତତ୍କାଳୀନ ବ୍ରିଟିଶ ବଡ଼ଲାଟ୍ ଲିନ୍‌ଲିଥ୍‌ଗୋ ଭୟଭୀତ ହୋଇ ପ୍ରଧାନମନ୍ତ୍ରୀ ଚର୍ଚ୍ଚିଲଙ୍କୁ ଗୋପନରେ ଚିଠି ଲେଖିଲେ ଯେ ୧୮୫୭ର ସିପାହୀ ବିଦ୍ରୋହ ପରେ ଏପରି ଭୟଙ୍କର ବିଦ୍ରୋହ ହୋଇନଥିଲା । **ଏହି ବିପ୍ଳବ କ୍ରମେ ତୀବ୍ର ଆକାର ଧାରଣ କରିଥିଲା । ଅନେକ ସ୍ଥାନରେ ଲୋକେ ଗାନ୍ଧିଜୀଙ୍କ ଅହିଂସା ଆନ୍ଦୋଳନ କଥା ଭୁଲିଯାଇ ଥାନା ପୋଡ଼ି ଦେଲେ । ରେଳପଥ ଓ ପୋଲ ଉଡ଼ାଇ ଦେଲେ । ବ୍ରିଟିଶ ପୋଲିସ୍ ଓ ସାମରିକ ବାହିନୀ ଗାଁଗହଳକୁ ଯେପରି ଆସି ନପାରିବେ ସେପରି ବ୍ୟବସ୍ଥା କରିଥିଲେ ।**

ଭାରତରେ ଏପରି ଗଣ ବିପ୍ଳବ ନିଶ୍ଚିତ ଭାବେ ଥିଲା ବଡ଼ ଧରଣର ଓ ଏହାର ପ୍ରଭାବ ସୈନ୍ୟ ବାହିନୀ ଉପରେ ମଧ ପଡ଼ିଥିଲା । ବ୍ରିଟିଶ ସୈନ୍ୟ ବାହିନୀରେ ଥିବା ଭାରତୀୟମାନେ ବିଦ୍ରୋହ ଆରମ୍ଭ କରି ଦେଇଥିଲେ । ସର୍ବଭାରତୀୟ ସ୍ତରରେ ବ୍ରିଟିଶ ପୋଲିସ୍ ଓ ସୈନ୍ୟବାହିନୀ ଆଖିରେ ଧୂଳି ଦେଇ ଯେଉଁ ନେତାମାନେ ଗୋପନରେ ଏହି ଆନ୍ଦୋଳନକୁ ଚାଲୁ ରଖିଥିଲେ, ସେମାନଙ୍କ ମଧ୍ୟରେ ସର୍ବାଗ୍ରେ ଥିଲେ ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ରାମ ମନୋହର ଲୋହିଆ ଓ ଅରୁଣା ଆସଫ୍ ଅଲ୍ଲୀ । ସେମାନଙ୍କୁ ସେତେବେଳେ ଯେଉଁ ଯୁବକ ଜଣକ ସାହାଯ୍ୟ କରୁଥିଲେ ସେ ଥିଲେ ଡାଲମିଆଁ ଜୈନ କମ୍ପାନୀର ସୁଦକ୍ଷ ବିମାନ ଚାଳକ ବିଜୁ ପଟ୍ଟନାୟକ । ଶେଷରେ ବ୍ରିଟିଶ ପୋଲିସ ବିଜୁଙ୍କୁ ଧରି ନେଇ ନାନାଦି ଶାରୀରିକ ନିର୍ଯ୍ୟାତନା ଦେଇଥିଲେ । **ଭାରତରେ ଏହି ଆନ୍ଦୋଳନରେ ପ୍ରାୟ ୧୫ ହଜାର ଲୋକ ପ୍ରାଣ ହରାଇଥିଲେ । ହଜାର ହଜାର ମହିଳାଙ୍କୁ କୁଆଡ଼େ ଧର୍ଷଣ କରାଯାଇଥିଲା । ସଡ଼େଇରେ ବେଶ୍ୟାମାନଙ୍କ ପରିସ୍ରା ନେଇ ନିରୀହ ଲୋକଙ୍କ ଉପରକୁ ଫିଙ୍ଗା ଯାଉଥିଲା ।**

ଏହି ଆନ୍ଦୋଳନ ପ୍ରଭାବରେ ଯେଉଁ ଘଟଣାଟି ଗୁରୁତ୍ୱପୂର୍ଣ୍ଣ ଥିଲା, ତାହା ହେଲା କୋରାପୁଟର ଆଦିବାସୀ ନେତା ଲକ୍ଷ୍ମଣ ନାଏକ ଅଗଷ୍ଟ ବିପ୍ଳବରେ ସକ୍ରିୟ ଅଂଶଗ୍ରହଣ କରି ବ୍ରହ୍ମପୁର ଜେଲ୍‌ରେ ୧୯୪୩ ମାର୍ଚ୍ଚ ୨୮ରେ ଫାଶୀଦଣ୍ଡ ପାଇବା । ଅଗଷ୍ଟ ବିପ୍ଳବରେ ଫାଶୀ ପାଇଥିବା ଏକମାତ୍ର ଓଡ଼ିଆ ଆଦିବାସୀ ନେତା ଓ ସ୍ୱାଧୀନତା ସଂଗ୍ରାମୀ ଥିଲେ ଲକ୍ଷ୍ମଣ । ସେ ଜଣେ ଫରେଷ୍ଟ ଗାର୍ଡ଼ଙ୍କୁ ହତ୍ୟା କରିଥିଲେ ବୋଲି ତାଙ୍କ ନାମରେ ମିଥ୍ୟା ଅଭିଯୋଗ କରାଯାଇଥିଲା ।

**ଓଡ଼ିଶାରେ ଅଗଷ୍ଟ ବିପ୍ଳବ**

ଓଡ଼ିଶାରେ ଭାରତଛାଡ଼ ଆନ୍ଦୋଳନ ବା ଅଗଷ୍ଟ ବିପ୍ଳବର ଅଭୂତପୂର୍ବ ପ୍ରଭାବ ପରିଲକ୍ଷିତ ହୋଇଥିଲା । **ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ ଭାବେ ପରିଚିତ ଏହି ବିପ୍ଳବରେ ଓଡ଼ିଶାରୁ ପ୍ରାୟ ଚାରି ହଜାର ସଂଗ୍ରାମୀ ଗିରଫ ହୋଇଥିଲେ ।** ସେତେବେଳେ ଓଡ଼ିଶାର ଲୋକସଂଖ୍ୟା ବହୁତ କମ୍ ଥିଲା । ଓଡ଼ିଶାର ୭ଟି ସ୍ଥାନରେ ଗୁଳିକାଣ୍ଡ ହୋଇଥିଲା, ଯେଉଁଥିରେ ୭୨ ଜଣ ପ୍ରାଣ ହରାଇଥିଲେ । ଓଡ଼ିଶାର ତିନୋଟି ଜେଲରେ କୁଆଡ଼େ ୬୮ ଜଣ ପ୍ରାଣ ହରାଇଥିଲେ ଓ ୨୦ ହଜାର ଟଙ୍କାର ଜୋରିମାନା ବିଭିନ୍ନ ସ୍ଥାନରୁ ଆଦାୟ ହୋଇଥିଲା ।

**୧୯୪୨ ଅଗଷ୍ଟ ୯ରୁ ଓଡ଼ିଶାରେ ଆରମ୍ଭ ହୋଇଥିବା ଏହି ବିପ୍ଳବରେ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଲୁଣିଆ, ଖଇରାଡିହି ଓ ଇରମଠାରେ ବ୍ରିଟିଶ ପୋଲିସ ଗୁଳିରେ ୪୨ ଜଣ ପ୍ରାଣ ହରାଇଥିଲେ । ଅବିଭକ୍ତ କୋରାପୁଟ ଜିଲ୍ଲାର ମାଥିଲି ଓ ପାପଡ଼ାହାଣ୍ଡିରେ ପୁଲିସ୍ ୨୫ ଜଣଙ୍କୁ ଗୁଳି କରି ମାରିଥିଲା । କଟକ ଜିଲ୍ଲାର କାଇପଡ଼ାଠାରେ ସେହିପରି ୪ ଜଣ ଓ ପୁରୀ ଜିଲ୍ଲାର ନିମାପଡ଼ାରେ ଜଣେ ପୁଲିସ୍ ଗୁଳିରେ ପ୍ରାଣ ହରାଇଥିଲେ । କୋରାପୁଟ ଓ ନବରଙ୍ଗପୁର ଜେଲ୍‌ରେ ଅସ୍ୱାସ୍ଥ୍ୟକର ପରିବେଶ ଯୋଗୁଁ ୬୭ ଜଣଙ୍କର ପ୍ରାଣହାନୀ ଘଟିଥିଲା ।**

ଏହି ଆନ୍ଦୋଳନ ପ୍ରଭାବରେ ଯେଉଁ ଘଟଣାଟି ଗୁରୁତ୍ୱପୂର୍ଣ୍ଣ ଥିଲା, ତାହା ହେଲା କୋରାପୁଟର ଆଦିବାସୀ ନେତା ଲକ୍ଷ୍ମଣ ନାଏକ ଅଗଷ୍ଟ ବିପ୍ଳବରେ ସକ୍ରିୟ ଅଂଶଗ୍ରହଣ କରି ବ୍ରହ୍ମପୁର ଜେଲ୍‌ରେ ୧୯୪୩ ମାର୍ଚ୍ଚ ୨୮ରେ ଫାଶୀଦଣ୍ଡ ପାଇବା । ଅଗଷ୍ଟ ବିପ୍ଳବରେ ଫାଶୀ ପାଇଥିବା ଏକମାତ୍ର ଓଡ଼ିଆ ଆଦିବାସୀ ନେତା ଓ ସ୍ୱାଧୀନତା ସଂଗ୍ରାମୀ ଥିଲେ ଲକ୍ଷ୍ମଣ । ସେ ଜଣେ ଫରେଷ୍ଟ ଗାର୍ଡ଼ଙ୍କୁ ହତ୍ୟା କରିଥିଲେ ବୋଲି ତାଙ୍କ ନାମରେ ମିଥ୍ୟା ଅଭିଯୋଗ କରାଯାଇଥିଲା ।

ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ଘଟଣା ଥିଲା ଭଦ୍ରକ ଅନ୍ତର୍ଗତ ଇରମର ଗୁଳିକାଣ୍ଡ । **୧୯୪୨ ସେପ୍ଟେମ୍ବର ୨୮ ତାରିଖରେ ସନ୍ଧ୍ୟା ପ୍ରାୟ ୫ଟା ସମୟରେ ବ୍ରିଟିଶ ସରକାରଙ୍କ ବିରୋଧରେ ସେଠାରେ ଚାଲିଥାଏ ସଭା । ବ୍ରିଟିଶ ପୁଲିସ୍ ସେଠାରେ ଗୁଳିକରି ୨୯ ଜଣଙ୍କୁ ନିହତ କରିବା ସଂଗେସଂଗେ ୧୫୦ ଜଣଙ୍କୁ କ୍ଷତବିକ୍ଷତ କରିପକାଇଥିଲେ । ଶହ ଶହ ଲୋକ ଗିରଫ ହେଲେ । ଏହାକୁ ଦ୍ୱିତୀୟ ଜାଲିଆନାୱାଲାବାଗ ବୋଲି କୁହାଯାଏ । ପଞ୍ଜାବର ଜାଲିଆନାୱାଲାବାଗ ଘଟଣା ପରେ ସମ୍ଭବତଃ ଅନ୍ୟତ୍ର କୌଣସିଠାରେ ଏକାସାଙ୍ଗରେ ଏତେ ଲୋକ ବ୍ରିଟିଶ ପୁଲିସ୍ ଗୁଳିରେ ନିହତ ହୋଇନଥିଲେ ।**

ଭାରତଛାଡ଼ ଆନ୍ଦୋଳନ ବେଳେ ଓଡ଼ିଶାର ପୂର୍ବତନ ଗଡ଼ଜାତ ତାଳଚେର, ଢେଙ୍କାନାଳ, ନୟାଗଡ଼, ଆଠଗଡ଼ ଓ ନୀଳଗିରିର ଲୋକେ ପ୍ରଜାମଣ୍ଡଳ ନେତୃତ୍ୱରେ ମଧ ଜୋର୍‌ଦାର ଆନ୍ଦୋଳନ କରିଥିଲେ । ଏହି ଆନ୍ଦୋଳନ ସମୟରେ ଭାରତର ୬ଟି ସ୍ଥାନରେ ବ୍ରିଟିଶ ସରକାର ବିମାନରୁ ଗୁଳିବର୍ଷଣ କରିଥିଲେ । ସେଥିମଧ୍ୟରେ ଓଡ଼ିଶାର ତାଳଚେର ଉପରେ ବିମାନରୁ ଗୁଳିବର୍ଷଣ ହୋଇଥିଲା ।

ସ୍ୱାଧୀନ ଭାରତର ନାଗରିକଭାବେ ଆମେ ଆଜି ସ୍ୱାଧୀନତାର ସ୍ୱାଦରେ ମସଗୁଲ ଥିଲାବେଳେ ଯେଉଁମାନେ ସ୍ୱାଧୀନତା ପାଇଁ ଲଢ଼େଇ କରି ଶହୀଦ ହୋଇଥିଲେ, କାରାବରଣ କରିବା ସହିତ ନାନାଦି ନିର୍ଯ୍ୟାତନା ଭୋଗିଥିଲେ, ସେମାନଙ୍କୁ ମନେ ରଖିଛି ବା କିଏ ? ଯେଉଁ ସ୍ୱାଧୀନତା ସଂଗ୍ରାମୀମାନେ ଆଜି ବି ଆମ ଗହଣରେ ଅଛନ୍ତି, ସେମାନଙ୍କ ସଂଖ୍ୟା କମି ଆସିଲାଣି । ଆଉ କେତେବର୍ଷ ପରେ ସେମାନେ ଆଉ ଆମ ଗହଣରେ ନଥିବେ । ମାତ୍ର ଇତିହାସ ସେମାନଙ୍କୁ ଭୁଲି ନଯାଉ ।

ଡି-୧୦/୫
ୟୁନିଟ୍-୮, ଭୁବନେଶ୍ୱର

# ଭାରତର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶା

ବସନ୍ତ କୁମାର ଦେବ

**ଆ**ମର ପବିତ୍ର ଜନ୍ମଭୂମି ଭାରତବର୍ଷ ପ୍ରାୟ ୨୦୦ ବର୍ଷ ଧରି ଇଂରେଜ ଶାସନାଧୀନ ହୋଇ ରହିଥିଲା । ଭାରତର ଜନସାଧାରଣ ବ୍ରିଟିଶ ଶାସକମାନଙ୍କ ଜୁଲୁମ୍ ତଥା ଅତ୍ୟାଚାରରେ ଅତିଷ୍ଠ ହୋଇପଡ଼ିଥିଲେ । ଭାରତର ଅଗଣିତ ନରନାରୀ ସ୍ୱାଧୀନତା ସଂଗ୍ରାମରେ ନିଜକୁ ଉତ୍ସର୍ଗ କରିଥିଲେ । ଫଳରେ ସେମାନଙ୍କୁ କାରାବରଣ କରିବାକୁ ପଡ଼ିଥିଲା । ବ୍ରିଟିଶ୍ ପୋଲିସ୍‌ର ଅମାନୁଷିକ ଅତ୍ୟାଚାର ତଥା ଲାଠି ଓ ଗୁଳିର ଶିକାର ହେବାକୁ ପଡ଼ିଥିଲା । ଦେଶମାତୃକା ପାଇଁ ଭାରତମାତାର ବରପୁତ୍ରମାନେ ବୀରତ୍ୱର ପରାକାଷ୍ଠା ପ୍ରଦର୍ଶନ କରି ହସି ହସି ନିଜ ଜୀବନକୁ ଉତ୍ସର୍ଗ କରିଥିଲେ । ତ୍ୟାଗ, ବୀରତ୍ୱ ଓ ବଳିଦାନ ପାଇଁ ସେମାନେ ଆଜି ନମସ୍ୟ । ସେହି ଶହୀଦମାନଙ୍କ ପାଇଁ ଦେଶ ଆଜି ଗୌରବାନ୍ୱିତ । ସେମାନଙ୍କୁ ଆଜି ଆମେ ସ୍ମରଣ କରିବା କଥା ।

ସ୍ୱାଧୀନ ଭାରତର ଜନ୍ମତିଥି ଅଗଷ୍ଟ ୧୫ । ଏହି ଦିନଠାରୁ ଗୋଟିଏ ନୂତନ ଯୁଗର ସୂତ୍ରପାତ ହେଲା । ସାରାବିଶ୍ୱ ପାଇଁ ଏହି ଦିନଟି ଗୁରୁତ୍ୱପୂର୍ଣ୍ଣ । କାରଣ ଏହା ସମଗ୍ର ମାନବ ଜାତି ପାଇଁ ରାଜନୈତିକ, ସାମାଜିକ, ସାଂସ୍କୃତିକ ଏବଂ ଆଧ୍ୟାତ୍ମିକ ସ୍ତରରେ ଏକ ଅଭିନବ ଚେତନା ଜାଗ୍ରତ କରି ଏକ ନୂତନ ଯୁଗର ଦିଗ୍‌ଦର୍ଶନ ଦେଲା । ୧୯୪୭ ଅଗଷ୍ଟ ୧୫ ସ୍ୱାଧୀନ ଏବଂ ଗଣତାନ୍ତ୍ରିକ ଭାରତର ଏକ ନୂତନ ଅଭ୍ୟୁଦୟର ପରିଚୟ ଦେଇଥିଲା । ସମଗ୍ର ଅଞ୍ଚଳର ସମସ୍ତ ଧର୍ମର ନରନାରୀଙ୍କୁ ଏକତ୍ର କରି ଗାନ୍ଧିଜୀ ବ୍ରିଟିଶ ଶାସନ ବିରୁଦ୍ଧରେ ଏକ ଜାତୀୟ ଆନ୍ଦୋଳନର ନେତୃତ୍ୱ ନେଇଥିଲେ । ସେ ଥିଲେ ସତ୍ୟ ଅହିଂସାର ପୂଜାରୀ । ଭାରତର ଜନଗଣଙ୍କୁ ସେ ଅହିଂସା ମନ୍ତ୍ରରେ ଦୀକ୍ଷିତ କରିଥିଲେ । ଅହିଂସା ତାଙ୍କର ଅମୋଘ ଅସ୍ତ୍ର । ଆଜକୁ ୬୦ ବର୍ଷ ପୂର୍ବେ ଏହି ଦିବସରେ ଆମେ ଗୋରା ଶାସକମାନଙ୍କ କବଳରୁ ମୁକ୍ତ ହୋଇ ସ୍ୱାଧୀନତାର ସ୍ୱାଦ ଅନୁଭବ କରିଥିଲୁ । ଏହା ତାଙ୍କ ନେତୃତ୍ୱଦ୍ୱାରା ସମ୍ଭବ ହୋଇପାରିଥିଲା । ସେ ଭାରତର ଶେଷ ସ୍ୱାଧୀନତା ସଂଗ୍ରାମ 'ଭାରତ ଛାଡ଼' ଆନ୍ଦୋଳନର ଡାକରା ଦେଇଥିଲେ । ୧୯୪୨ ମସିହା ଜୁଲାଇ ୧୪ରେ ୱାର୍ଦ୍ଧାଠାରେ ଅଖିଳ ଭାରତ କଂଗ୍ରେସ କାର୍ଯ୍ୟକାରୀ କମିଟିର ବୈଠକରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ 'ଭାରତ ଛାଡ଼' ଆନ୍ଦୋଳନର ଡାକରା ଦିଆଯିବ ବୋଲି ସିଦ୍ଧାନ୍ତ ହୋଇଥିଲା । ଭାରତଛାଡ଼ ପ୍ରସ୍ତାବଟି ଅଧିବେଶନରେ ଗୃହୀତ ହେବା ପରେ ଗାନ୍ଧିଜୀ ଓ ସର୍ବଭାରତୀୟ ନେତୃବୃନ୍ଦ ହୃଦୟଙ୍ଗମ କରିଥିଲେ ଯେ ଇଂରେଜ ସରକାର ଭାରତୀୟମାନଙ୍କର ସ୍ୱାଧୀନତା ଦାବିକୁ ଗ୍ରହଣ କରିବା ପରିବର୍ତ୍ତେ ଏହି ଆନ୍ଦୋଳନକୁ ଦୃଢ଼ ହସ୍ତରେ ଦମନ କରିବେ । କିନ୍ତୁ ବ୍ରିଟିଶ ସରକାର ବିରୁଦ୍ଧରେ ଗାନ୍ଧିଜୀଙ୍କ ୧୯୨୦-୧୯୨୨ ମସିହା ପର୍ଯ୍ୟନ୍ତ ଅସହଯୋଗ ଆନ୍ଦୋଳନ ଓ ୧୯୩୦-୩୪ ମସିହାର ଆଇନ ଅମାନ୍ୟ ଆନ୍ଦୋଳନ ଭାରତବାସୀଙ୍କୁ ଏକ ସୂତ୍ରରେ ବାନ୍ଧି ରଖିଥିଲା ଏବଂ ଭବିଷ୍ୟତ କାର୍ଯ୍ୟପନ୍ଥା ପାଇଁ କ୍ଷେତ୍ର ପ୍ରସ୍ତୁତ କରିଥିଲା । ୧୯୪୨ ମସିହାର ଭାରତଛାଡ଼ ଆନ୍ଦୋଳନ ବ୍ରିଟିଶ ଶାସନର ଭିତ୍ତିଭୂମିକୁ ଦୋହଲାଇ ଦେଇଥିଲା । ଏହି ଆନ୍ଦୋଳନରେ ଅଭୂତପୂର୍ବ ଜନଜାଗରଣ ବିପ୍ଳବୀମାନଙ୍କର ଶକ୍ତି ସାହସ ଓ ଦେଶପ୍ରୀତି ଦେଖି ସେମାନଙ୍କୁ ଆଉ ଅଧିକ ଦିନ ପରାଧୀନ ଭାବେ ରଖି ହେବ ନାହିଁ ବୋଲି ଇଂରେଜ ସରକାରଙ୍କ ହୃଦବୋଧ ହେଲା ଏବଂ ଭାରତର ମୁକ୍ତିପଥ ସୁଗମ୍ୟ ହେଲା । ଭାରତବାସୀଙ୍କ ବହୁ ଆକାଂକ୍ଷିତ ଲକ୍ଷ୍ୟ ତଥା କଷ୍ଟଲବ୍ଧ ସ୍ୱାଧୀନତା ହାସଲ ହୋଇପାରିଲା ଏବଂ ଭାରତବର୍ଷ ଏକ ସ୍ୱାଧୀନ ରାଷ୍ଟ୍ରରୂପେ ପରିଗଣିତ ହେଲା ।

୧୯୪୨ ମସିହା ଅଗଷ୍ଟ ୮ ତାରିଖରେ ବମ୍ବେର ଗ୍ୱାଲିଆଟାଂ ପଡ଼ିଆରେ ମୌଲାନା ଆବୁଲ କାଲାମ ଆଜାଦ୍‌ଙ୍କ ନେତୃତ୍ୱରେ, ଭାରତୀୟ ଜାତୀୟ କଂଗ୍ରେସ ଅଧିବେଶନରେ ଓଡ଼ିଶାରୁ ଡକ୍ଟର ହରେକୃଷ୍ଣ ମହତାବ, ମାଳତୀ ଚୌଧୁରୀ, ସୁରେନ୍ଦ୍ରନାଥ ଦ୍ୱିବେଦୀ, ପ୍ରହଲ୍ଲାଦ ରାୟଲାଠ ଓ ଲକ୍ଷ୍ମୀନାରାୟଣ ମିଶ୍ର ପ୍ରଭୃତି ପ୍ରତିନିଧିତ୍ୱ କରିଥିଲେ ଏବଂ ତା' ପରଦିନ ଗାନ୍ଧିଜୀ ଗିରଫ ହୋଇଥିଲେ ।

୧୯୪୨ ମସିହା ଅଗଷ୍ଟ ୧୫ ତାରିଖ ଦିନ ରେଭେନ୍ସା କଲେଜର ଛାତ୍ରମାନେ କଲେଜର ଅଫିସ ଗୃହରେ ନିଆଁ ଲଗାଇ ଦେଇଥିଲେ । ସେମାନଙ୍କ ମଧ୍ୟରେ ଥିଲେ ଅଶୋକ ଦାସ, ଶ୍ରୀହର୍ଷ ମିଶ୍ର, ବିଜୟ ବଳରାମ ମହାନ୍ତି, ହରିହର ପୂଜାପଣ୍ଡା ଓ ପ୍ରହଲ୍ଲାଦ ରାଏଲାଠ, ବିଭୁଧେନ୍ଦ୍ର ମିଶ୍ର ଓ ସୁରଜମଲ ଶାହା ଥିଲେ । ଛାତ୍ରମାନେ ଟେଲିଫୋନ, ରେଳଲାଇନ୍ ବିଚ୍ଛିନ୍ନ କରି ଦେଇଥିଲେ ଏବଂ ସରକାରକୁ ଟିକସ ନ ଦେବା ପାଇଁ ଲୋକମାନଙ୍କୁ ପ୍ରବର୍ତ୍ତାଇ ଥିଲେ । ସେମାନଙ୍କ ମଧ୍ୟରୁ

ବିଭୁଧେନ୍ଦ୍ର ମିଶ୍ର ଓ ସୁରଜମଲ୍ଲ ଶାହାଙ୍କୁ କଟକରୁ ଗିରଫ କରାଯାଇ ବ୍ରହ୍ମପୁର ସେଣ୍ଟ୍ରାଲ୍ ଜେଲକୁ ପଠାଇ ଦିଆଯାଇଥିଲା । କୋରାପୁଟର ଆଦିବାସୀମାନେ ମଧ୍ୟ ସରକାରଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । ସେମାନେ ଲକ୍ଷ୍ମୀପୁର ଥାନାର କେତେକ କାଗଜପତ୍ର ପୋଡ଼ି ଦେଇଥିଲେ ଏବଂ କୋରାପୁଟ-କଳାହାଣ୍ଡି ସୀମାର ଅମ୍ପାନୀଘାଟ କୂଳରେ ଥିବା ପୋଲକୁ ଭାଙ୍ଗି ଦେଇଥିଲେ ।

ଅଗଷ୍ଟ ୨୧ ତାରିଖରେ କୋରାପୁଟର ମାଥିଲିଠାରେ ଗୁଳିକାଣ୍ଡ ଘଟିଥିଲା, ଏହାର ମୁଖ୍ୟ ନାୟକ ଥିଲେ ଲକ୍ଷ୍ମଣ ନାଏକ । ୧୯୪୨ ଅଗଷ୍ଟ ୨୦ ତାରିଖରେ ଗୋପବନ୍ଧୁ ଚୌଧୁରୀଙ୍କ ଗିରଫ ହେବା ଖବର ପାଇ ରମା ଦେବୀ ବରୀଠାରେ ପହଞ୍ଚିଥିଲେ । ଏହାପରେ ତାଙ୍କ ବାନର ସେନାଗଣ କାଇପଦର ପୋଷ୍ଟ ଅଫିସ୍‌ରେ ନିଆଁ ଲଗାଇ ଦେଇଥିଲେ । ସନ୍ନ୍ୟାସୀପୁରଠାରୁ ଅନ୍ନପୂର୍ଣ୍ଣା ମହାରଣାଙ୍କ ନେତୃତ୍ୱରେ କିଛି ଲୋକ ଆସି ପହଞ୍ଚି ଯିବାରୁ ପରିସ୍ଥିତି ଉତ୍ତେଜନାପୂର୍ଣ୍ଣ ହୋଇ ପଡ଼ିଲା । ତତ୍କାଳୀନ ଡି.ଏସ୍.ପି. କଳାମାଟିଆ ଛକଠାରେ ଫାୟାରିଂ ଅର୍ଡ଼ର ଦେଇଥିଲେ । ଫଳରେ କୃଷ୍ଣନଗରର ସାନନ୍ଦ ସ୍ୱାଇଁ, ଶ୍ରୀରାମପୁରର ସାଉଁଳି ମଳିକ ଓ ହାଟସାହିର ମାୟାଧର ଭୂୟାଁ ଭୂଇଁରେ ଟଳି ପଡ଼ିଲେ । ସେପ୍ଟେମ୍ବର ୨୨ ତାରିଖ ଦିନ ଧାମନଗର ଥାନା ଅନ୍ତର୍ଗତ ଲୁଣିଆ ଗାଁରେ ୯ ଜଣଲୋକ ଗୁଳି କାଣ୍ଡରେ ମୃତ୍ୟୁବରଣ କରିଥିଲେ । କିନ୍ତୁ ପୁଲିସ୍ ୨୨ ତାରିଖ ଦିନ ଗାଁରେ ପହଞ୍ଚିବାର ଖବର ପାଇ ଆଖପାଖ ଗାଁରେ ପ୍ରାୟ ୫/୬ ହଜାର ଲୋକ ଏକଜୁଟ୍ ହୋଇ ସେମାନଙ୍କଠାରୁ ବନ୍ଧୁକ ଛଡ଼ାଇ ନେଇଥିଲେ । ପୋଲିସମାନଙ୍କର ବହୁ କାକୁତି ମିନତି ଦ୍ୱାରା ସେମାନେ ଯେତେବେଳେ ବନ୍ଧୁକ ଫେରାଇ ଦେଲେ ବିଶ୍ୱାସଘାତକ ପୋଲିସ୍ ପ୍ରଥମେ ନିଧି ମଳିକଙ୍କ ଉପରକୁ ଗୁଳି ଚାଳନା କରିଥିଲେ । ଡି.ଏସ୍.ପି. କୁଞ୍ଜ ବିହାରୀ ମହାନ୍ତିଙ୍କ ଫାୟାରିଂ ନିର୍ଦ୍ଦେଶରେ ଇରମ୍ ଗୁଳିକାଣ୍ଡରେ ପ୍ରଥମ ନାରୀ ଶହୀଦ ହୋଇଥିଲେ ପରି ବେଓ୍ୱା । ପରେ ସେହି ପଡ଼ିଆରେ ଶହ ଶହ ସଂଖ୍ୟାରେ ପୋକ ମାଛି ପରି ଟଳି ପଡ଼ିଥିଲେ ସଂଗ୍ରାମୀମାନେ । ସେହି ସ୍ଥାନ ରକ୍ତତୀର୍ଥ-ଇରମ୍ ନାମରେ ପରିଚିତ ।

ଅଗଷ୍ଟରେ ଏହି ସ୍ୱାଧୀନତା ଆନ୍ଦୋଳନରେ ତାଳଚେରରେ ନେତୃତ୍ୱ ନେଇଥିଲେ ପବିତ୍ରମୋହନ ପ୍ରଧାନ, ଆଠଗଡ଼ର ବ୍ରଜ ପଟ୍ଟନାୟକ, ନବକିଶୋର ପଟ୍ଟନାୟକ ଓ ଅଚ୍ୟୁତାନନ୍ଦ ପଟ୍ଟନାୟକ । ଢେଙ୍କାନାଳର ବୈଷ୍ଣବଚରଣ ପଟ୍ଟନାୟକ ପରଜଙ୍ଗର ମହେଶ୍ୱର ସୁବାହୁ ସିଂହ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସେମାନେ ଜେଲ୍ ଓ ଥାନାରେ ନିଆଁ ଲଗାଇ ପୋଲିସ୍‌ର ଗୋଳା ବାରୁଦ ଲୁଟି ନେଇଯାଇଥିଲେ । ନୟାଗଡ଼ ଓ ଓଡ଼ଗାଁ ଥାନାର ପୋଲିସ୍ ଅତ୍ୟାଚାରରେ ନୂଆଗାଁର କାଶୀ ଡାକୁଆ ଅକ୍ଟୋବର ୧୬ ତାରିଖରେ ମୃତ୍ୟୁବରଣ କରିଥିଲେ ଏବଂ ପୁରୀ ଜିଲ୍ଲାର ନିମାପଡ଼ାବାସୀ 'ଭାରତଛାଡ଼' ଆନ୍ଦୋଳନକୁ ସମର୍ଥନ କରି ନିମାପଡ଼ା ଥାନା ଉପରେ କଂଗ୍ରେସ ପତାକା ଉଡ଼ାଇବାକୁ ଯାଇ ଉଚ୍ଛବ ମଳିକ ପୋଲିସ୍ ଗୁଳିରେ ପ୍ରାଣ ହରାଇଲେ । ନିମାପଡ଼ାରେ ମଧ୍ୟ 'ଥାନା ପୋଡ଼ି' ହୋଇଥିଲା ।

ସମୁଦାୟ ୨୪୦ ଜଣ ବ୍ୟକ୍ତି ସାମରିକ ବାହିନୀ ଏବଂ ପୁଲିସ୍ ଗୁଳିରେ ପ୍ରାଣ ହରାଇଥିଲେ । ଗୁଳିମାଡ଼ରେ ୧୬୩୦ ଜଣ ଆହତ ହୋଇଥିଲେ । ସମୁଦାୟ ୫୩୮ଟି ସ୍ଥାନରେ ଗୁଳିକାଣ୍ଡ ଘଟିଥିଲା ଏବଂ ୧୮୦୦୦ ଲୋକ ଗିରଫ ହୋଇଥିଲେ । ଓଡ଼ିଶାର ତାଳଚେର ସମେତ ୬ଟି ସ୍ଥାନରେ ଆକାଶମାର୍ଗରୁ ଗୁଳିବର୍ଷଣ ହୋଇଥିଲା । କିନ୍ତୁ କଂଗ୍ରେସ ପକ୍ଷରୁ ଅନୁସନ୍ଧାନ କରାଯାଇ ଜଣାଗଲା ଯେ ଏହି ଆନ୍ଦୋଳନ ଫଳରେ ପ୍ରାୟ ୧୫୦୦୦ ଲୋକ ପ୍ରାଣ ହରାଇଥିଲେ ଏବଂ ଲକ୍ଷେରୁ ଅଧିକ ଲୋକ ଗିରଫ ହୋଇଥିଲେ ଏବଂ ହଜାର ହଜାର ମହିଳାଙ୍କୁ ଧର୍ଷଣ କରାଯାଇଥିଲା । ବେସରକାରୀ ହିସାବ ଅନୁଯାୟୀ ଓଡ଼ିଶାରେ ପ୍ରାୟ ୪ ହଜାର ଲୋକ ଗିରଫ ହୋଇଥିଲେ । ୬ଟି ସ୍ଥାନରେ ଗୁଳିମାଡ଼ରେ ୭୨ ଜଣ ପ୍ରାଣ ହରାଇଥିଲେ ଏବଂ ୩ଟି ଜେଲ୍‌ରେ ୬୮ ଜଣ ପ୍ରାଣ ହରାଇଥିଲେ । ସମଗ୍ର ଓଡ଼ିଶାରେ ଯେଉଁ ୭ଟି ସ୍ଥାନରେ ଗୁଳିଚାଳନା ହୋଇଥିଲା, ତନ୍ମଧ୍ୟରୁ ଲୁଣିଆ, ଖଇରାଡ଼ିଲି ଓ ଇରମ୍‌ଠାରେ ଗୁଳିଚାଳନା ଫଳରେ ୪୨ ଜଣ ପ୍ରାଣ ହରାଇଥିଲେ । ସେହିପରି କୋରାପୁଟ ଜିଲ୍ଲାର ମାତିଲି ଓ ପାପଡ଼ାହାଣ୍ଡିଠାରେ ଗୁଳି ଚାଳନା କରାଯାଇ ୨୫ ଜଣଙ୍କୁ ହତ୍ୟା କରାଯାଇଥିଲା । କଟକ ଜିଲ୍ଲାର କାଇପଡ଼ାଠାରେ ଗୁଳି ଚାଳନାରେ ୪ ଜଣ, ପୁରୀ ଜିଲ୍ଲାର ନିମାପଡ଼ାଠାରେ ଜଣେ ମୃତ୍ୟୁବରଣ କରିଥିଲେ । କୋରାପୁଟ ଓ ନବରଙ୍ଗପୁର ଜେଲରେ ୬୬ ଜଣଙ୍କର ମୃତ୍ୟୁ ଘଟିଥିଲା । କୋରାପୁଟ ଜିଲ୍ଲାର ଆଦିବାସୀ କଂଗ୍ରେସ କର୍ମୀ 'ଲକ୍ଷ୍ମଣ ନାଏକ' ଅଗଷ୍ଟ ବିପ୍ଳବରେ ସକ୍ରିୟ ଅଂଶ ଗ୍ରହଣ କରି ଶେଷରେ ଫାଶୀ ଖୁଣ୍ଟରେ ଝୁଲିଲେ । ଜଣେ ଫରେଷ୍ଟ ଗାର୍ଡ଼ଙ୍କୁ ହତ୍ୟା କରିଥିବା ମିଥ୍ୟା ଅଭିଯୋଗରେ ତାଙ୍କୁ ଫାଶି ଦଣ୍ଡାଦେଶ ଦିଆଯାଇଥିଲା । ୧୯୪୩ ମସିହା ମାର୍ଚ୍ଚ ୨୮ ତାରିଖରେ ବ୍ରହ୍ମପୁର ଜେଲ୍‌ରେ ତାଙ୍କୁ ଫାଶି ଦିଆଗଲା ।

ଭାରତଛାଡ଼ ଆନ୍ଦୋଳନରେ ତାଳଚେର, ଢେଙ୍କାନାଳ, ନୟାଗଡ଼, ଆଠଗଡ଼ ଓ ନୀଳଗିରି ଲୋକେ ପ୍ରଜାମଣ୍ଡଳ ନେତୃତ୍ୱରେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ।

ସମାଜବାଦୀ ନେତା ସୁରେନ୍ଦ୍ର ନାଥ ଦ୍ୱିବେଦୀଙ୍କ ନେତୃତ୍ୱରେ ଅଗଷ୍ଟ ବିପ୍ଳବବେଳେ ଏକ ସଂଗଠିତ ଗୋପନୀୟ ଆନ୍ଦୋଳନ ଚାଲିଥିଲା । ସେ କଟକରେ ଦୁଇ ମାସ ରହି ଏହି ଆନ୍ଦୋଳନ ଚାଲୁ ରଖିଥିଲେ । ତାଙ୍କ ସହିତ ଥିଲେ ନିଶାମଣି ଖୁଣ୍ଟିଆ, ବାଙ୍କବିହାରୀ ଦାସ, ନରସିଂହଚରଣ ମହାନ୍ତି ଯଦୁମଣି ଜେନା, ଗୌରୀଚରଣ ଦାସ, ଭୈରବ ଚରଣ ମହାନ୍ତି, ଦୁଃଖୀଶ୍ୟାମ ପାଢ଼ୀ, ମଥୁରାନନ୍ଦ ସାହୁ ଓ ବିଶ୍ୱନାଥ ପରିଡ଼ା ।

ଭାରତଛାଡ଼ ଆନ୍ଦୋଳନ ସମୟରେ ସର୍ବଭାରତୀୟ ସ୍ତରରେ ଗୋପନରେ ଏହି ଆନ୍ଦୋଳନକୁ ଚାଲୁ ରଖିବାକୁ ଜୟପ୍ରକାଶ ନାରାୟଣ, ଅଚ୍ୟୁତ ପଟ୍ଟବର୍ଦ୍ଧନ, ରାମ ମନୋହର ଲୋହିଆ, ଅରୁଣା ଆସଫ୍ ଅଲ୍ଲୀ ପ୍ରମୁଖ ଏକ ନିର୍ଦ୍ଦେଶକ ମଣ୍ଡଳୀ ଗଠନ କରିଥିଲେ । ଯିବାଆସିବା ସମୟରେ ଧରାପଡ଼ିଯିବା ପାଇଁ ଭୟ ରହୁଥିଲା । ଏଣେ ଟ୍ରେନ୍‌ରେ ଯିବାଆସିବା କରିବା ଦ୍ୱାରା ବିଳମ୍ବ ମଧ ହେଉଥିଲା । ତେଣୁ ଏମାନଙ୍କୁ ସାହାଯ୍ୟ କରିବା ପାଇଁ ଡାଲମିଆଁ ଜୈନ କମ୍ପାନୀର କମର୍ସିଆଲ ବିମାନ ଚାଳକ ବିଜୁ ପଟ୍ଟନାୟକ ତାଙ୍କର କେତେକ ସାଥୀ ବିମାନ ଚାଳକଙ୍କୁ ରାଜି କରାଇଥିଲେ । ଶେଷରେ ବିଜୁବାବୁ ପୋଲିସ୍ ହାତରେ ଧରାପଡ଼ି ଗିରଫ ହୋଇଥିଲେ । ସେଥିପାଇଁ ତାଙ୍କୁ ଦୀର୍ଘ କାରାବାସ ଭୋଗ କରିବାକୁ ପଡ଼ିଥିଲା । ତାଙ୍କର ଏହି ଦୁଃସାହସ, ତ୍ୟାଗ, ଦେଶପ୍ରେମ ବିଶେଷ କରି ଭାରତର ଶେଷ ସ୍ୱାଧୀନତା ସଂଗ୍ରାମକୁ ସଫଳ କରିବା ଦିଗରେ ପ୍ରୟାସ ଜାରି ରଖିଥିବା ହେତୁ ଆଜି ସମଗ୍ର ଓଡ଼ିଆ ଜାତି ଗର୍ବିତ ।

ଆଜିର ଏହି ପବିତ୍ର ଦିବସ ଅବସରରେ ଏହି କଷ୍ଟଲବ୍ଧ ସ୍ୱାଧୀନତା ସଂଗ୍ରାମ ବିଷୟରେ ଦେଶର ପ୍ରତ୍ୟେକ ନାଗରିକ ତଥା ଜାତି, ଧର୍ମ, ନିର୍ବିଶେଷରେ ଆବାଳ-ବୃଦ୍ଧ-ବନିତା ସଚେତନ ହେବା ଏକାନ୍ତ ଅପରିହାର୍ଯ୍ୟ । ଆମ ଇତିହାସର ପୃଷ୍ଠା ଆଦର୍ଶ ମଣ୍ଡିତ ହେଉ । ସଂସ୍କାର ଓ ମୂଲ୍ୟବୋଧ ପ୍ରତିଟି କ୍ଷେତ୍ରରେ ଉଜ୍ଜୀବିତ ହୋଇ ରହୁ । ଏହା ହିଁ ଆଜିର ଅନୁଚିନ୍ତା ।

କ୍ୱା.ନଂ- ଇ-୭୫
ୟୁନିଟ୍-୮, ଭୁବନେଶ୍ୱର-୧୨

---



# ସ୍ୱାଧୀନତା ଆନ୍ଦୋଳନରେ ଓଡ଼ିଶାର ନାରୀ

ମାନସ କୁମାର ମଲ୍ଲିକ

୧୮୫୭ର ସିପାହୀ ବିଦ୍ରୋହକୁ ବିଧିବଦ୍ଧ ଭାବେ ଭାରତୀୟ ମୁକ୍ତି ସଂଗ୍ରାମର ଅଗ୍ରମାରମ୍ଭ କୁହାଯାଉଥିଲେ ମଧ ବ୍ରିଟିଶ ଶାସନ ବିରୋଧରେ ପ୍ରକୃତ ସଂଗ୍ରାମର ଆରମ୍ଭ ହୋଇଥିଲା ମୋହନ ଦାସ କରମଚାନ୍ଦ ଗାନ୍ଧୀ ଓରଫ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ଯୋଗଦାନପରେ । ମୁଖ୍ୟତଃ ଅହିଂସାକୁ ପାଥେୟ କରି ସେ ଯେଉଁସବୁ ଆନ୍ଦୋଳନର ଡାକରା ଦେଇଥିଲେ ସେଥିରେ ଦେଶର ବିଭିନ୍ନ ପ୍ରାନ୍ତରରୁ ଅଗଣିତ ଜନତା ନିଜର ସାମାଜିକ ସ୍ଥିତି, ପଦମର୍ଯ୍ୟାଦା ଓ ଶିକ୍ଷାଦୀକ୍ଷାକୁ ଜଳାଞ୍ଜଳି ଦେଇ ଦେଶ ମାତୃକା ପାଇଁ ନିଜ ଜୀବନକୁ ଉତ୍ସର୍ଗ କରି ଦେଇଥିଲେ । ଗାନ୍ଧିଜୀଙ୍କ ଆହ୍ୱାନର ପ୍ରଭାବ ଏପରି ଥିଲା ଯେ ଭାରତୀୟ ସମାଜରେ ଯୁଗ ଯୁଗ ଧରି ରକ୍ଷଣଶୀଳତାରେ ଅଭେଦ୍ୟ ଜାଲ ଭିତରେ ଛନ୍ଦି ହୋଇ ରହିଥିବା ନାରୀ ସମାଜ ମଧ ଏହିସବୁ ଆନ୍ଦୋଳନଗୁଡ଼ିକରେ ଝାସ ଦେଇ ଦେଶର ସ୍ୱାଧୀନତା ପାଇଁ ପଥ ପ୍ରସ୍ତୁତ କରିପାରିଥିଲେ । ସେତେବେଳେ ବିଭିନ୍ନ ପ୍ରଦେଶରୁ ନାରୀ ସ୍ୱାଧୀନତା ସଂଗ୍ରାମୀମାନେ ଆନ୍ଦୋଳନରେ ସକ୍ରିୟ ଅଂଶ ଗ୍ରହଣ କରି ଇତିହାସରେ ନାମ ରଖିଯାଇଥିବାବେଳେ ଓଡ଼ିଶାର ନାରୀମାନେ କୌଣସି ଗୁଣରେ ପଛରେ ପଡ଼ିନଥିଲେ । ସେମାନେ ମଧ ପ୍ରତ୍ୟକ୍ଷ ଓ ପରୋକ୍ଷ ଭାବରେ ସ୍ୱାଧୀନତା ଆନ୍ଦୋଳନରେ ସାମିଲ ହୋଇ ଦେଶକୁ ବ୍ରିଟିଶ ଶାସନ କବଳରୁ ମୁକୁଳେଇ ଏକ ନୂତନ ଭାରତ ଗଠନର ସ୍ୱପ୍ନ ଦେଖିଥିଲେ ।

ପ୍ରଥମ ବିଶ୍ୱଯୁଦ୍ଧ ବେଳେ ଭାରତୀୟମାନଙ୍କୁ ଇଂରେଜ ସରକାର ଦେଇଥିବା ପ୍ରତିଶ୍ରୁତିଗୁଡ଼ିକ କାର୍ଯ୍ୟକାରୀ ନହେବାରୁ ଦେଶବାସୀ କ୍ଷୁବ୍ଧ ହୋଇଥିଲେ । ୧୯୧୯ ମସିହା ସୁଦ୍ଧା ସେଥିରୁ ଜନ୍ମ ନେଲା ଅସହଯୋଗ ଆନ୍ଦୋଳନ, ଯାହାର ପୁରୋଧା ଥିଲେ ମହାତ୍ମା ଗାନ୍ଧୀ । ବିଦେଶୀ ଜିନିଷ ବର୍ଜନ, ଦେଶୀୟ ବସ୍ତ୍ର ବା ଖଦୀର ପ୍ରଚଳନ ପାଇଁ ପ୍ରଚାର ଇତ୍ୟାଦି କାର୍ଯ୍ୟରେ ଯୋଗ ଦେଇ ଓଡ଼ିଶାର ଅନେକ ନାରୀ ସଂଗ୍ରାମୀ ଅକଥନୀୟ କଷ୍ଟ ସହିଥିଲେ ତଥା ବନ୍ଦୀ ମଧ ହୋଇଥିଲେ । ୧୯୨୧ ମସିହା ଜାନୁଆରୀ ୪ ତାରିଖରେ କାଠଯୋଡ଼ି ନଦୀବାଲିରେ ଗୋପବନ୍ଧୁଙ୍କ ନେତୃତ୍ୱରେ ଯେଉଁ ସାଧାରଣ ସଭା ହୋଇଥିଲା, ସେଥିରେ ଅନେକ ମହିଳା ଯୋଗ ଦେଇଥିଲେ । ସେମାନଙ୍କ ଭିତରେ ଥିଲେ ପ୍ରମୁଖ ନାରୀ ନେତ୍ରୀ ରମାଦେବୀ ଓ ସରଳା ଦେବୀ । ଏହାପରେ ୧୯୨୧ ମସିହା ମାର୍ଚ୍ଚ ୨୪ ତାରିଖରେ ମହାତ୍ମା ଗାନ୍ଧୀ ଓଡ଼ିଶାକୁ ଆସି ସେହି ସ୍ଥାନରେ ଏକ ବିଶାଳ ସମାବେଶରେ ଭାଷଣ ଦେଇଥିଲେ । ଏଥିରେ ଅନେକ ମହିଳା ଯୋଗ ଦେଇ ମହାତ୍ମାଙ୍କ ଓଜସ୍ୱିନୀ ଭାଷଣରେ ଉଦ୍‌ବୁଦ୍ଧ ହୋଇ ସୂତା କଟା, ଖଦୀବସ୍ତ୍ର ବୟନ ଓ ସ୍ୱାଧୀନତା ସଂଗ୍ରାମରେ ଭାଗ ନେବା ପାଇଁ ଶପଥ ନେଇଥିଲେ । ସେମାନଙ୍କ ମଧରେ ଥିଲେ ବ୍ୟାସକବି ଫକୀର ମୋହନ ସେନାପତିଙ୍କ ସଂପର୍କୀୟା ସରୋଜିନୀ ଚୌଧୁରୀ, ହୈମବତୀ ଦେବୀ, ସରଳା ଦେବୀ ଏବଂ ରମା ଦେବୀ ପ୍ରମୁଖ । ସମ୍ଭ୍ରାନ୍ତ ରକ୍ଷଣଶୀଳ ଜମିଦାର ପରିବାରରେ ଜନ୍ମ ହୋଇଥିବା ସରଳା ଦେବୀ ସେହି ଦିନରୁ ଖଦୀ ଲୁଗା ପିନ୍ଧି କଂଗ୍ରେସର ସଭ୍ୟା ହେଲେ । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ଝିଆରୀ ରମା ଦେବୀ ହେଲେ ନିଖିଳ ଭାରତ ଚରଖା ସଂଘର ସଦସ୍ୟା । ୧୯୨୨ ମସିହାରେ ଗୟାଠାରେ ଅନୁଷ୍ଠିତ କଂଗ୍ରେସର ବାର୍ଷିକ ଅଧିବେଶନରେ ମଧ ସେ ଯୋଗ ଦେଇଥିଲେ । ତାଙ୍କ ସହିତ ଥିଲେ ଓଡ଼ିଶାର ଆଉ ଦୁଇ ଜଣ ନାରୀ ସଂଗ୍ରାମୀ, କଟକର ପଦ୍ମାବତୀ ଦେଇ ଓ ଗଞ୍ଜାମର ହୀରାମଣି ଦେବୀ । କଂଗ୍ରେସର ପ୍ରାଦେଶିକ କମିଟି ତରଫରୁ କଟକରେ ଯେଉଁ ସମ୍ମିଳନୀ ହୋଇଥିଲା, ସେଥିରେ ସରଳା ଦେବୀ ପ୍ରଭାବଶାଳୀ ବକ୍ତୃତା ଦେଇ ଆହୁରି ଅନେକ ଉତ୍କଳୀୟ ନାରୀଙ୍କୁ ବ୍ରିଟିଶ ଶାସନ ବିରୋଧରେ ସଂଗ୍ରାମ କରିବା ପାଇଁ ପ୍ରେରଣା ଦେଇ ପାରିଥିଲେ । ସେହି ବର୍ଷ ତାଙ୍କରି ଉଦ୍ୟମରେ ଗଞ୍ଜାମରେ କେବଳ ନାରୀମାନଙ୍କୁ ନେଇ ଗୋଟିଏ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା, ଯେଉଁଥିରେ ହୈମବତୀ ଦେବୀ, କିଶୋରୀ ମଣି ଦେବୀ, ସ୍ୱର୍ଣ୍ଣଲତା ଦେବୀ ପ୍ରମୁଖ ସଂଗ୍ରାମୀମାନେ ତାଙ୍କୁ ସହଯୋଗ କରିଥିଲେ । ଏହାପରେ ବିଶିଷ୍ଟ ସଂଗ୍ରାମୀ ସୁନାମଣି ଦେବୀଙ୍କ ଉଦ୍ୟମରେ ବୋଲଗଡ଼ଠାରେ ଏକ ନାରୀ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା, ଯାହା ଗ୍ରାମାଞ୍ଚଳରେ ରହୁଥିବା ଅନେକ ଅବଗୁଣ୍ଠନବତୀ ଓଡ଼ିଆ ନାରୀଙ୍କୁ ନିଜ ପରିବାର ସହିତ ଦେଶ ପାଇଁ ମଧ କିଛି ତ୍ୟାଗ ସ୍ୱୀକାର କରିବା ପାଇଁ ଉତ୍ସାହିତ କରିଥିଲା ।

ବ୍ରିଟିଶ ଶାସନ ବିରୋଧରେ ନାରୀମାନଙ୍କ ସଂଗ୍ରାମକୁ ଆହୁରି ଦୃଢ଼ କରିବାକୁ ହେଲେ ନାରୀଶିକ୍ଷାର ଯଥେଷ୍ଟ ଗୁରୁତ୍ୱ ଥିବାରୁ ୧୯୨୬ ମସିହାରେ ପୁରୀଠାରେ ଏକ ବିଧବାଶ୍ରମ ପ୍ରତିଷ୍ଠା ହୋଇ ଅଳ୍ପ ବୟସରେ ବିଧବା ହୋଇଥିବା ନାରୀମାନଙ୍କୁ ଆତ୍ମ ନିର୍ଭରଶୀଳ ହେବା ପାଇଁ

ଶିକ୍ଷା ଦିଆଯାଉଥିଲା, ଯେଉଁଥିରେ ସୁନାମଣୀ ଦେବୀ, ଅନ୍ନପୂର୍ଣ୍ଣା ସାହୁ ଏବଂ ଅନ୍ୟମାନେ ସଂପୃକ୍ତ ଥିଲେ । ସୁନାମଣୀ ଦେବୀ ଓ ଅନ୍ନପୂର୍ଣ୍ଣା ସାହୁ ପରବର୍ତ୍ତୀ ସମୟରେ ଗାନ୍ଧିଜୀଙ୍କ ସାବରମତି ଆଶ୍ରମରେ ରହି ସତ୍ୟାଗ୍ରହ ବିଷୟରେ ଶିକ୍ଷା ଗ୍ରହଣ କରି ନିଜର ଉତ୍ତମ କାର୍ଯ୍ୟ ପାଇଁ ଗାନ୍ଧିଜୀଙ୍କର ବିଶେଷ ପ୍ରଶଂସାଭାଜନ ହୋଇପାରିଥିଲେ । ୧୯୨୯ ମସିହାରେ ବାଲେଶ୍ୱରଠାରେ କାନ୍ତକବିଙ୍କ ଭଗିନୀ ଜାହ୍ନବୀ ଦେବୀ ନାରୀ ଶିକ୍ଷା ସମିତି ସ୍ଥାପନ କରି ଅନେକ ବାଳିକାଙ୍କୁ ଶିକ୍ଷା ପ୍ରଦାନ କରିଥିଲେ । ୧୯୨୮ ମସିହାରେ କଂଗ୍ରେସ ଜାତୀୟ ବାର୍ଷିକ ଅଧିବେଶନ କଲିକତାଠାରେ ଅନୁଷ୍ଠିତ ହୋଇଥିଲା, ଯେଉଁଥିରେ ଓଡ଼ିଶାରୁ ଜାହ୍ନବୀ ଦେବୀ, ସରୋଜିନୀ ଚୌଧୁରୀ, ରମା ଦେବୀ ଓ ରସାମଣୀ ପ୍ରମୁଖ ନାରୀ ନେତ୍ରୀମାନେ ଯୋଗ ଦେଇଥିଲେ । ଏହି ବର୍ଷ ରମାଦେବୀ ତାଙ୍କ ସ୍ୱାମୀ ଗୋପବନ୍ଧୁ ଚୌଧୁରୀଙ୍କ ସହ ଜଗତସିଂହପୁରର ଅଳକା ଆଶ୍ରମରେ ରହି ଗାନ୍ଧୀବାଣୀ ପ୍ରଚାର କରିବା ସହ ଅନେକ ଜନହିତକର କାର୍ଯ୍ୟ ଆରମ୍ଭ କରିଥିଲେ । ଗାନ୍ଧିଜୀଙ୍କ ପ୍ରବର୍ତ୍ତିତ ଖଦୀ ଆନ୍ଦୋଳନରେ ଅନେକ ଉତ୍କଳୀୟ ନାରୀ ଅଂଶଗ୍ରହଣ କରିଥିଲେ । ଗୁଜରାଟରୁ କଲ୍ୟାଣଜୀ କୋଠାରୀ ଓ ତାଙ୍କ ପତ୍ନୀ ପୁରୁବାଈଙ୍କୁ ଗାନ୍ଧିଜୀ ଓଡ଼ିଶାରେ ଖଦୀ କାର୍ଯ୍ୟ ପାଇଁ ପଠାଇଥିଲେ । ତାଙ୍କୁ ଏଥିରେ ଯେଉଁମାନେ ସହଯୋଗ କରିଥିଲେ, ସେମାନଙ୍କ ମଧ୍ୟରେ ଭଦ୍ରକର ନିଶାମଣୀ ଦେବୀ ଥିଲେ ଅନ୍ୟତମ ।

ଏହାପରେ ଆସେ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସରେ ଆଉ ଏକ ଅଧ୍ୟାୟ - ଆଇନଅମାନ୍ୟ ଆନ୍ଦୋଳନ । ସେଥିରେ ଓଡ଼ିଶାରେ ଆହୁରୀ ଅନେକ ନାରୀ ସଂଗ୍ରାମୀ ସୃଷ୍ଟି ହୋଇ ସ୍ୱାଧୀନତା ଆନ୍ଦୋଳନର ମୋଡ଼ ବଦେଳଇ ଦେବାକୁ ସକ୍ଷମ ହେବା ସହ ନିଜର ବୈପ୍ଳବିକ ଚିନ୍ତାଧାରା ଓ ସଂଗ୍ରାମୀ ଦକ୍ଷତାର ପ୍ରମାଣ ଦେବାକୁ ସୁଯୋଗ ପାଇଥିଲେ ।

ଭାରତୀୟମାନଙ୍କୁ କ୍ଷମତା ଦେବାକୁ ବ୍ରିଟିଶ ସରକାର ରାଜି ନହେବାରୁ ମହାତ୍ମା ଗାନ୍ଧୀ ୧୯୩୦ ମସିହାରେ ଆଇନ ଅମାନ୍ୟ ଆନ୍ଦୋଳନର ଡାକରା ଦେଲେ । ବ୍ରିଟିଶ୍ ଆଇନକୁ ଭାଙ୍ଗିବା ପାଇଁ ପ୍ରଥମେ ଲୁଣ ମାରିବାକୁ ତିଆରି ହୋଇଥିବା ଆଇନକୁ ଲଙ୍ଘନ କରିବା ସକାଶେ ଗାନ୍ଧିଜୀ ଲବଣ ସତ୍ୟାଗ୍ରହ ଆରମ୍ଭ କଲେ । ସେହିଥିରୁ ଜନ୍ମ ନେଲା ଇତିହାସ ପ୍ରସିଦ୍ଧ ଦାଣ୍ଡି ଯାତ୍ରା ଯେଉଁଥିରେ ଜାତୀୟ ସ୍ତରରେ ଗାନ୍ଧୀ, ନେହରୁଙ୍କ ସମେତ ବହୁ ପୁରୁଷ ମହିଳା, ବାଳକ ବାଳିକା ଯୋଗ ଦେଇଥିଲେ । ଓଡ଼ିଶାରେ ମଧ୍ୟ ଏହି ଲବଣ ସତ୍ୟାଗ୍ରହ ବିଭିନ୍ନ ଉପକୂଳ ଅଞ୍ଚଳରେ ଚାଲୁ ରହିଲା । ଏଥିରେ ପୁରୁଷ ସଂଗ୍ରାମୀଙ୍କ ସହ ନାରୀ ସଂଗ୍ରାମୀମାନେ ମଧ୍ୟ ଭାଗ ନେଇଥିଲେ । ଓଡ଼ିଶାର ଲବଣ ସତ୍ୟାଗ୍ରହକୁ ଅନ୍ୟାନ୍ୟ ପୁରୁଷ ସତ୍ୟାଗ୍ରହୀଙ୍କ ସହିତ ମୁଖ୍ୟତଃ ରମା ଦେବୀ, ସରଳା ଦେବୀ ଓ ମାଳତୀ ଦେବୀ ପ୍ରଭୃତି ନାରୀନେତ୍ରୀମାନେ ନେତୃତ୍ୱ ପ୍ରଦାନ କରିଥିଲେ । ତେବେ ଆଇନ ଅମାନ୍ୟ ଆନ୍ଦୋଳନକୁ ଆହୁରି ଜୋରଦାର କରିବା ପାଇଁ ଗାନ୍ଧିଜୀଙ୍କ ଆହ୍ୱାନରେ ସ୍କୁଲ କଲେଜରେ ପଢୁଥିବା ଅଳ୍ପ ବୟସର ବାଳକ ବାଳିକାମାନେ ବାନର ସେନା ଗଠନ କରି ସତ୍ୟାଗ୍ରହକୁ ସହଯୋଗ କରୁଥିଲେ । କମ୍ ବୟସର ହୋଇଥିବାରୁ ବାନର ସେନାର କର୍ମୀମାନଙ୍କୁ ସାଧାରଣତଃ ବ୍ରିଟିଶ ସରକାରୀ କର୍ମଚାରୀମାନେ ବେଶି ଦଣ୍ଡ ଦେଉନଥିଲେ ଏବଂ ସେହି ସୁଯୋଗରେ ସେମାନେ ଅନେକ ସାହସିକ କାର୍ଯ୍ୟ କରିପାରୁଥିଲେ । ଓଡ଼ିଶାରେ ପୁରୁଷ ବାନରସେନାଙ୍କ ସହ ନାରୀ ବାନରସେନାର କର୍ମୀମାନେ ମିଶି ଆନ୍ଦୋଳନକୁ ଆଗେଇ ନେଇଥିଲେ । ଇଞ୍ଚୁଡ଼ିଠାରେ ଯେଉଁ ଲବଣ ସତ୍ୟାଗ୍ରହ ହୋଇଥିଲା, ସେଥିରେ ସରଳା ଦେବୀ, ରମା ଦେବୀ, ମାଳତୀ ଦେବୀ ଓ କିରଣବାଳା ସେନଙ୍କ ପ୍ରରୋଚନାରେ ଅନେକ ନାରୀ ବାନରସେନା ରୂପେ ଯୋଗ ଦେଇଥିଲେ । ସେହିପରି ଅସ୍ତରଙ୍ଗଠାରେ ଅନୁଷ୍ଠିତ ଲବଣ ସତ୍ୟାଗ୍ରହରେ ହାରାମଣି ଦେବୀ, ଧାନମଣି ଦେବୀ, ପଦ୍ମାବତୀ ଦେବୀ ଓ ସେବତୀ ଦେବୀ ପ୍ରଭୃତି ନାରୀ ବାନରସେନାର ସଂଗ୍ରାମୀମାନେ ଯୋଗ ଦେଇ ଗିରଫ ହୋଇଥିଲେ । ଗଞ୍ଜାମର ହୁମାଠାରେ ସରଳା ଦେବୀ ଓ ଅନ୍ୟମାନେ ଲୁଣ ମାରିବାକୁ ଯିବା ବାଟରେ ଗିରଫ ହୋଇ କାରାଦଣ୍ଡ ଭୋଗିଥିଲେ । କୁଜଙ୍ଗର ରାଣୀ ଭାବବତୀ ପାଟମହାଦେଈ ରମା ଦେବୀଙ୍କ ସହ ଗଣ୍ଡିକିପୁରଠାରେ ଲୁଣମରାରେ ଯୋଗ ଦେଇଥିଲେ । ଏଥିରେ ସ୍ଥାନୀୟ ଅଞ୍ଚଳରେ ଶହ ଶହ ମହିଳା, ଝିଅ ବୋହୂ ଶଙ୍ଖ ହୁଳହୁଳି ପକାଇ ସେମାନଙ୍କୁ ସହଯୋଗ କରିଥିଲେ । ଏହିସବୁ ଆନ୍ଦୋଳନ ପାଇଁ ରମା ଦେବୀ ଓ ମାଳତୀ ଦେବୀଙ୍କୁ ମଧ୍ୟ କାରାଦଣ୍ଡରେ ଦଣ୍ଡିତ କରାଯାଇଥିଲା ।

ଏହାପରେ ବର୍ଷା ଦିନ ଆସିବାରୁ ଲୁଣମରା କାର୍ଯ୍ୟ ବନ୍ଦ ହେଲେ ମଧ୍ୟ ଆଇନ ଅମାନ୍ୟ ଆନ୍ଦୋଳନ ନୂଆ ରୂପରେ ଚାଲୁ ରହିଲା । ବିଲାତି ଲୁଗା ଦୋକାନ ଏବଂ ମଦ ଦୋକାନ ଆଗରେ ପିକେଟିଂ କରିବା, ବୁଲେଟିନ୍ ବାଣ୍ଟିବା, ପୂର୍ବରୁ ମରାଯାଇଥିବା ଲୁଣକୁ 'ଗାନ୍ଧୀ ଲୁଣ' ନାମ ଦେଇ ବିକ୍ରି କରି ଆନ୍ଦୋଳନର ଖର୍ଚ୍ଚ ଉଠାଇବା ଇତ୍ୟାଦି କାର୍ଯ୍ୟ ଚାଲିଲା । ରମା ଦେବୀଙ୍କ କନ୍ୟା ଅନ୍ନପୂର୍ଣ୍ଣା ମହାରଣା, ବଙ୍ଗୀୟା ଯୁବତୀ ମଙ୍ଗଳା ସେନଗୁପ୍ତା, କଟକର ଶଶିବାଳା କାନୁନ୍‌ଗୋ ଓ ଅଂଶୁମାଳା ରାୟ, ବରୀର ପ୍ରିୟମ୍ୱଦା, ପୁରୀର ସରସ୍ୱତୀ ଦେବୀ, ନୀଳମଣି ଦେବୀ ଓ ହାରାମଣି ଦେବୀ, ଦିଗପହଣ୍ଡିର ଗୁଣମଞ୍ଜରୀ ଦେବୀ ଓ ଶୋଭା ଦେବୀ, ମୟୂରଭଞ୍ଜର ମାଳତୀ ଦାସ, ବାଲେଶ୍ୱରର ଗୋଦାବରୀ ଦେବୀ, ଯଶୋଦା ଦେବୀ, କ୍ଷେତ୍ରମଣି ଦେବୀ, ସମ୍ବଲପୁରର ଜମ୍ବୁବତୀ ଦେବୀ, ରୁକ୍ମଣୀ ଦେବୀ ପ୍ରମୁଖ ନାରୀ ସଂଗ୍ରାମୀମାନେ ଏଥିରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିବା ସହିତ ଆନ୍ଦୋଳନକୁ ଆଗକୁ ବଢ଼େଇ ନେଇଥିଲେ । ସରକାର ଏହି ସବୁକୁ ଜୋରଜବରଦସ୍ତ ବନ୍ଦ କରିବାକୁ ଯେତେ ପ୍ରୟାସ ଏବଂ ସ୍ଥଳ ବିଶେଷରେ ମାଡ଼ ଜୋରିମାନା ଦଣ୍ଡରେ ଦଣ୍ଡିତ କଲେ ମଧ୍ୟ ସଂଗ୍ରାମୀମାନଙ୍କ ଉପରେ ସେପରି ପ୍ରଭାବ ପଡ଼ିନଥିଲା ।

ସାମାଜିକ ସ୍ତର କିମ୍ବା ଶିକ୍ଷାଗତ ଯୋଗ୍ୟତାର କୌଣସି ବାଛ ବିଚାର ନ ରଖି ନାରୀମାନଙ୍କୁ ସମାନ ରାଜନୈତିକ ଅଧିକାର ପ୍ରଦାନ କରିବା ପାଇଁ ୧୯୩୧ ମସିହାରେ କରାଚି କଂଗ୍ରେସ ଅଧିବେଶନରେ ଯେଉଁ ପ୍ରସ୍ତାବ ଗୃହୀତ ହୋଇଥିଲା, ସେଥିରେ ଓଡ଼ିଶାରୁ ସରୋଜିନୀ ଚୌଧୁରୀ, ମାଳତୀ ଦେବୀ, ରମା ଦେବୀ ଓ ସରଳା ଦେବୀ ଯୋଗ ଦେଇଥିଲେ । ଏଥିରେ ସରଳା ଦେବୀ ତାଙ୍କର ବକ୍ତୃତା ମଧ୍ୟ ପ୍ରଦାନ କରିଥିଲେ । ସେହି ବର୍ଷ ମେ ମାସରେ ପୁରୀଠାରେ ଏକ ନାରୀ ସମ୍ମିଳନୀର ଆୟୋଜନ କରାଯାଇଥିଲା । ଏଥିରେ ଅଧ୍ୟକ୍ଷତା କରିଥିଲେ ଜାହ୍ନବୀ ଦେବୀ । ଅନ୍ୟମାନଙ୍କ ସହିତ ଏଥିରେ କୁମୁଦିନୀ ଦେବୀ, କିରଣବାଳା ସେନ, ରମା ଦେବୀ, ସାବିତ୍ରୀ ଦେବୀ, ରାଧାମଣି ଦେବୀ, ଇଚ୍ଛାମଣି ଦେବୀ, ଗୌରୀ ଦେବୀ, ଜମୁନା ଦେବୀ, ରୋହିଣୀ ଦେବୀ ଓ ଚଞ୍ଚଳା ଦେବୀ ପ୍ରମୁଖ ନାରୀ ସଂଗ୍ରାମୀମାନେ ଯୋଗ ଦେଇଥିଲେ । ଏହା ପରବର୍ଷ ବାଲେଶ୍ୱରଠାରେ ଓଡ଼ିଶାର ପ୍ରଥମ ମହିଳା ଡାକ୍ତର କୁନ୍ତଳା କୁମାରୀ ସାବତଙ୍କ ଅଧ୍ୟକ୍ଷତାରେ ଏକ ବିରାଟ ସମ୍ମିଳନୀ ଅନୁଷ୍ଠିତ ହୋଇଥିଲା । ଏଥିରେ ସରଳା ଦେବୀ ଓ ଓଡ଼ିଶାର ପ୍ରଥମ ବାଚସ୍ପତି ମୁକୁନ୍ଦ ପ୍ରସାଦ ଦାସଙ୍କ ପତ୍ନୀ ଜାହ୍ନବୀ ଦେବୀ ଓ ତାଙ୍କ ଭଗିନୀ କୋକିଳା ଦେବୀଙ୍କ ସମେତ ବହୁ ମହିଳା ଯୋଗ ଦେଇଥିଲେ ।

୧୯୩୨ ଜାନୁଆରୀ ୨୬ ତାରିଖ ଦିନ ସ୍ୱାଧୀନତାର ସଂକଳ୍ପ ପାଠ କରିବା ପାଇଁ କଟକରେ ଏକ ସଭା ହୋଇଥିଲା । କିରଣବାଳା ସେନ୍, ଜାହ୍ନବୀ ଦେବୀ ଓ ରମା ଦେବୀ ସହରର ବିଭିନ୍ନ ସ୍ଥାନରେ ଏହି ସଂକଳ୍ପ ପାଠ ଆରମ୍ଭ କରି ପୋଲିସ୍ ଦ୍ୱାରା ଗିରଫ ହୋଇଥିଲେ । ଏହି ବର୍ଷ ମାଳତୀ ଦେବୀଙ୍କୁ କ୍ରମାଗତ ସତ୍ୟାଗ୍ରହ ଯୋଗୁଁ ବିହାରର ହଜାରୀବାଗ ଜେଲ୍‌କୁ ୨ ବର୍ଷ ପାଇ ବନ୍ଦୀ ଭାବେ ପଠାଯାଇଥିଲା ।

୧୯୩୪ ମସିହାରେ ଗାନ୍ଧିଜୀଙ୍କ ଓଡ଼ିଶା ପଦଯାତ୍ରା ସମୟରେ ବହୁ ମହିଳା ତାଙ୍କ ସହିତ ଯୋଗ ଦେଇ ଖଦୀ, ହରିଜନ ସେବା, ନିଶା ନିବାରଣ, ଅସ୍ପୃଶ୍ୟତା ଦୂରୀକରଣ ଇତ୍ୟାଦି ସମାଜ ଗଠନ କାର୍ଯ୍ୟରେ ସାମିଲ ହେବା ପାଇଁ ସଂକଳ୍ପବଦ୍ଧ ହୋଇଥିଲେ । ୧୯୩୬ ମସିହାରେ 'ଅସ୍ପୃଶ୍ୟତା ନିବାରଣ ସମିତି' ଗଠନ କରାଯାଇଥିଲା । ଯେଉଁଥିରେ ରମା ଦେବୀ ସଂପାଦିକା ଥିଲେ । ପୂର୍ବ ବର୍ଣ୍ଣିତ ଅନେକ ନାରୀ ସଂଗ୍ରାମୀମାନଙ୍କ ସହିତ ସୁଶିଳା ଦେବୀ, କୃଷ୍ଣ କାମିନୀ ଦେବୀ, ପୁରୁବାଈ, ମଙ୍ଗଳା ଦେବୀ, ଶୋଭାବତୀ ଦେବୀ, ମାଣିକ ଦେବୀ, ତୁଳସୀ ଦେବୀ, ହରପ୍ରିୟା ଦେବୀ ଓ ଆହୁରି ଅନ୍ୟାନ୍ୟ ସଂଗ୍ରାମୀ ଗଣ ଏହି କାର୍ଯ୍ୟରେ ଯୋଗ ଦେଇଥିଲେ । ୧୯୩୫ ମସିହାରେ ଭାରତ ଶାସନ ଆଇନ ପ୍ରଚଳିତ ହେବା ପରେ ପ୍ରାଦେଶିକ ନିର୍ବାଚନରେ ଅଂଶ ଗ୍ରହଣ କରି ସରଳା ଦେବୀ ବ୍ୟବସ୍ଥାପକ ସଭାକୁ ନିର୍ବାଚିତ ହୋଇ ବାଲ୍ୟ ବିବାହ, ଯୌତୁକ ପ୍ରଥା ଏବଂ ନାରୀମାନଙ୍କର ସ୍ୱାର୍ଥହାନି କରୁଥିବା ଅନ୍ୟାନ୍ୟ ପ୍ରଥା ବିରୋଧରେ ଆଇନ ପ୍ରଣୟନ ପାଇଁ ବିଧେୟକ ଆଗତ କରିଥିଲେ ।

ଏହା ମଧ୍ୟରେ ବ୍ରିଟିଶ୍ ସରକାରଙ୍କ ବିରୋଧରେ କ୍ରମାଗତ ଆନ୍ଦୋଳନ ଚାଲୁ ରହିଥିଲେ ମଧ୍ୟ ୧୯୪୨ର 'ଭାରତ ଛାଡ଼' ଆନ୍ଦୋଳନ ମୁକ୍ତି ସଂଗ୍ରାମ ଇତିହାସର ମୋଡ଼ ବଦଳେଇ ଦେଇଥିଲା । ବମ୍ବେଠାରେ ଏହାର ପ୍ରସ୍ତାବ ଗ୍ରହଣ କରାଯିବା ବେଳେ ମାଳତୀ ଚୌଧୁରୀ ସେଠାରେ ଉପସ୍ଥିତ ଥିଲେ ଏବଂ ଓଡ଼ିଶାକୁ ଆସି ସେହି ଆନ୍ଦୋଳନର ବାର୍ତ୍ତା ପ୍ରଚାର କରିଥିଲେ । ରମା ଦେବୀଙ୍କ ଉଦ୍ୟମରେ ଆହୁରି ଅନେକ ଉତ୍କଳୀୟ ନାରୀ ଭାରତ ଛାଡ଼ ଆନ୍ଦୋଳନରେ ଯୋଗ ଦେଇଥିଲେ । ସରଳା ଦେବୀ, ମଙ୍ଗଳା ସେନଗୁପ୍ତା, ଶଶୀବାଳା କାନୁନ୍‌ଗୋ, ପ୍ରିୟମ୍ବଦା ଦେବୀ, ପ୍ରଭାବତୀ ଦେବୀ ପ୍ରଭୃତି ଅନେକ ନେତ୍ରୀଗଣ କାରାବରଣ କରିଥିଲେ । ଅନ୍ୟ ଯେଉଁ ନାରୀ ସଂଗ୍ରାମୀମାନେ ଭାରତଛାଡ଼ ଆନ୍ଦୋଳନରେ ଅଂଶ ଗ୍ରହଣ କରିଥିଲେ, ସେମାନଙ୍କ ମଧ୍ୟରୁ ବରଗଡ଼ର ପାର୍ବତୀ ଗିରି, ସମ୍ବଲପୁରର ଜମ୍ବୁବତୀ ଦେବୀ, ରାଧିକା ଦେବୀ, ସାବିତ୍ରୀ ଯୋଶି, ପୁରୀର ବିମଳା ଦେବୀ, ସୁନାମଣି ଦେବୀ, ଗଞ୍ଜାମର ଗୁଣମଣି ଦେବୀ, ଲକ୍ଷ୍ମୀବାଈ, ଚମ୍ପାଦେବୀ, ଶ୍ରୀମତୀ ସୂର୍ଯ୍ୟାମ୍ମା ଓ ପିତାରାମ୍ମା ପ୍ରଭୃତିଙ୍କ ନାମ ଉଲ୍ଲେଖଯୋଗ୍ୟ ।

ଏହିସବୁ ଆନ୍ଦୋଳନର ଓଡ଼ିଶାର ନାରୀ ସଂଗ୍ରାମୀମାନେ ଭାଗ ନେବା ସହିତ ଗାନ୍ଧିଜୀଙ୍କ ପ୍ରେରଣାରେ ଗ୍ରାମ୍ୟ ପୁନର୍ଗଠନ ଓ ସମାଜ ସଂସ୍କାର ଦିଗରେ ମଧ୍ୟ କାର୍ଯ୍ୟ କରି ନିଜ ଦକ୍ଷତାର ପରିଚୟ ଦେଇଥିଲେ । ବିଭିନ୍ନ ସ୍ଥାନରେ ଅସ୍ପୃଶ୍ୟତା ନିବାରଣ କେନ୍ଦ୍ର, ସେବା ଶ୍ରମ ଇତ୍ୟାଦି ସ୍ଥାପନ କରି ସମାଜରୁ ଜାତିପ୍ରଥା, ଛୁଆଁଛୁଆଁ ଭେଦଭାବ ଦୂରୀକରଣ, ନିଶା ନିବାରଣ, ସୂତାକଟା, ନାରୀ ଶିକ୍ଷା ଓ ଗ୍ରାମ୍ୟ ସଫେଇ ଇତ୍ୟାଦି କାର୍ଯ୍ୟ କରି ଅନ୍ୟମାନଙ୍କ ମଧ୍ୟରେ ଜାଗରଣ ଓ ସଚେତନତା ସୃଷ୍ଟି କରିପାରିଥିଲେ । ଏଥିରେ କେବଳ ସମ୍ଭ୍ରାନ୍ତ ବଂଶୀୟ, ଉଚ୍ଚ ମଧ୍ୟବିତ୍ତ ବା ଶିକ୍ଷିତ ଶ୍ରେଣୀର ନାରୀମାନେ ଯେ ଅଂଶଗ୍ରହଣ କରୁଥିଲେ ତାହା ନୁହେଁ, ଗାଁଗହଳିର ଚାଷୀ ମୂଲିଆ ଓ କାରିଗର ଶ୍ରେଣୀର ଶିକ୍ଷାଦୀକ୍ଷା, ଆର୍ଥିକ ଓ ସାମାଜିକ ସ୍ତରରେ ପଛୁଆ ଥିବା ନାରୀମାନେ ମଧ୍ୟ ପ୍ରତ୍ୟକ୍ଷ ବା ପରୋକ୍ଷ ଭାବରେ ସାମିଲ୍ ହେଉଥିଲେ ।

ସ୍ୱାଧୀନତା ଆନ୍ଦୋଳନରେ ସେହି ସବୁ ସଂଗ୍ରାମୀ, ସ୍ୱାର୍ଥତ୍ୟାଗୀ, ଦେଶସେବକ ମହିୟସୀ ନାରୀମାନଙ୍କ ଯୋଗଦାନ ଯୋଗୁଁ ସମାଜର ପୁନର୍ଗଠନ ହେବା ସହିତ ୧୯୪୭ ମସିହା ଅଗଷ୍ଟ ୧୫ ତାରିଖ ଦିନ ବ୍ରିଟିଶ ଶାସନ କବଳରୁ ଭାରତ ସ୍ୱାଧୀନ ହେବାର ପଥ ପ୍ରସ୍ତୁତ ହୋଇପାରିଥିଲା । ସ୍ୱାଧୀନତା ପରେ ମଧ୍ୟ ସେମାନଙ୍କ ମଧ୍ୟରୁ ଅନେକ ବିଭିନ୍ନ କ୍ଷେତ୍ରରେ ଦେଶ ସେବାରେ ନିଜକୁ ଉତ୍ସର୍ଗ କରି ଆମମାନଙ୍କର ନମସ୍ୟା ଓ ବନ୍ଦନୀୟା ହୋଇ ରହିଛନ୍ତି ।

ଗ୍ରା/ପୋ- ସର୍ଦ୍ଦୋଳା
ଭାୟା- କନକପୁର
ଜି.- ଜଗତସିଂହପୁର-୬

# ଉତ୍କଳୀୟ କବି ପ୍ରାଣରେ ଦେଶପ୍ରୀତିର ଝଙ୍କାର

କାଞ୍ଚ ନାରାୟଣ ମହାନ୍ତି

୧୮୦୩ ମସିହାରେ ଓଡ଼ିଶା ଇଂରେଜମାନଙ୍କଦ୍ୱାରା ଅଧିକୃତ ହୋଇଥିଲା । ପରାଧୀନ ଭାରତମାତାର ଦୁଃଖ ବଢ଼ି ବଢ଼ି ଚାଲିଥିଲା । ୧୯୦୩ ମସିହାରେ ଅଭ୍ୟୁଦୟ ଯୁଗର ଆରମ୍ଭ । ଉତ୍କଳ ସମ୍ମିଳନୀ ପ୍ରତିଷ୍ଠା ହେଲା । ଇଂରେଜ ଶାସନାଧୀନ ସମଗ୍ର ଓଡ଼ିଶା ଊନବିଂଶ ଶତାବ୍ଦୀରେ ଦାରୁଣ ଦୁର୍ଗତିର ସମୟ । ଅର୍ଥନୈତିକ ଓ ସାଂସ୍କୃତିକ ଅବକ୍ଷୟ ସହିତ ଓଡ଼ିଆ ଭାଷାର ବିଲୋପ ପାଇଁ ଆନ୍ଦୋଳନ ଚରମ ଅବସ୍ଥାରେ ପହଞ୍ଚିଥିଲା । ଏହି ସମୟ ହେଉଛି ଜାତୀୟ ଜାଗରଣ ଓ ସ୍ୱାଭିମାନର ଜନ୍ମ ପର୍ଯ୍ୟାୟ ।

ମାତୃଭୂମି ଓ ମାତୃଭାଷା ପାଇଁ ଯେଉଁ ଉତ୍କଳର ବରପୁତ୍ରମାନଙ୍କର ହୃଦୟ ବିଗଳିତ ହୋଇ ମନରେ ଜାତୀୟ ବିପ୍ଳବର ଝଙ୍କାର ତୋଳୁଥିଲା, ସେମାନଙ୍କର ରଚନାବଳୀ ମୁକ୍ତି ସଂଗ୍ରାମ ପାଇଁ ପ୍ରତିଟି ପ୍ରାଣରେ ଦେଶପ୍ରେମର ମଶାଲ ଜାଳି ଦେଇଥିଲା ।

ଯିଏ ଦେଶ ଓ ଜାତିକୁ ଭଲପାଏ, ସମ୍ମାନ କରେ, ସେ ସ୍ୱାର୍ଥକୁ ବଳି ଦେଇ ଜାତୀୟତାର ଯଜ୍ଞରେ ଆହୂତି ଦେବା ଶ୍ରେୟ । ଏହା ଥିଲା ଉତ୍କଳ ସମ୍ମିଳନୀର ସ୍ୱାଗତ ସଂଗୀତ । ଉତ୍କଳଗୌରବ ମଧୁସୂଦନ ଓଡ଼ିଶାବାସୀଙ୍କୁ ଆହ୍ୱାନ କରି କହିଥିଲେ -

'ଏହି ସମ୍ମିଳନୀ ଜାତି ପ୍ରାଣସିନ୍ଧୁ କୋଟି ପ୍ରାଣ ବିନ୍ଦୁ ଧରେ,
ତୋର ପ୍ରାଣବିନ୍ଦୁ ମିଶାଇ ଦେ' ଭାଇ ଡେଇଁପଡ଼ି ସିନ୍ଧୁ ନୀରେ ।।'

ଭାଷା ହିଁ ଗୋଟିଏ ଜାତିର ମନ୍ତ୍ର । ଓଡ଼ିଆ ଭାଷାର ବିଲୋପ ପାଇଁ ପଡ଼ୋଶୀ ରାଷ୍ଟ୍ରର ଚକ୍ରାନ୍ତ ସହିତ ଭାରତୀୟ ଯୁବଗୋଷ୍ଠୀ ନିଜ ଭାଷା ଓ ସଂସ୍କୃତିକୁ ଅନାଦର କରୁଥିବା ଦେଖି ବ୍ୟାସକବି 'ଉତ୍କଳ ଭ୍ରମଣ'ରେ ଲେଖିଥିଲେ -

'ପଢ଼ ଇଙ୍ଗରେଜୀ କେହି ମନା କରୁନାହିଁ ।
କିନ୍ତୁ ବାପା କାମ କର ଜାତି କୁଳ ଚାହିଁ
ଘୃଣା କରୁଅଛ ମାତୃଭାଷା ପଢ଼ିବାକୁ
ହାୟ, ହାୟ ଲାଜକଥା କହିବି କାହାକୁ ।'

କବି ଗୋପବନ୍ଧୁ ନବଉତ୍କଳର ପ୍ରତିଷ୍ଠାତା । ସେ ଓଡ଼ିଆ ଜାତିକୁ ଦେଶପ୍ରେମର ମନ୍ତ୍ରରେ ଉଦ୍‌ବୁଦ୍ଧ କରିବା ପାଇଁ ଉତ୍ସର୍ଗୀକୃତ ଅନ୍ୟତମ ପ୍ରବାଦପୁରୁଷ । ତାଙ୍କର ପ୍ରତିଟି ବାକ୍ୟ ଏବଂ ପ୍ରତିଟି ରଚନା ଥିଲା ଦେଶ ଓ ଜାତିକୁ ଜାଗରଣ କରିବାର ସ୍ୱର । ସ୍ୱାଧୀନ ଚିନ୍ତା ଜାଗ୍ରତ ନହେଲେ ମାନବ ଜୀବନ ଅସାର ବୋଲି ସେ କହିଛନ୍ତି-

ସ୍ୱାଧୀନତା ମାନବର ଜନ୍ମ ଅଧିକାର,
ସ୍ୱାଧୀନ ଭାଷଣ ଆଉ ସ୍ୱାଧୀନ ବିହାର ।
ସ୍ୱାଧୀନ ଜୀବନ ପୁଣି ସ୍ୱାଧୀନ ସମିତି,
ଚାରି ସ୍ତମ୍ଭେ ମାନବର ସମାଜ ସଂସ୍ଥିତି ।

ଅହିଂସା ମନ୍ତ୍ରରେ ଅଭିମନ୍ତ୍ରିତ ଉତ୍କଳମଣି ବୀର ଓଡ଼ିଆ ଜାତିର ରକ୍ତରେ ଅପରିସୀମ ଶକ୍ତିର ଉନ୍ମେଷ କରାଇ ଲେଖିଲେ -

'କାପୁରୁଷ ପରି ମରିବା ଜଗତେ ନୁହେଁ ନର
ପଉରୁଷ,
ପରହିତ ସାଧି ମରେ ଯେ ମହୀରେ ସେହି ଏକା ସୁପୁରୁଷ ।'

ଅନ୍ୟତମ ନିର୍ଭୀକ ଜାତୀୟ କବି ବୀର କିଶୋର ଜାତୀୟତା ମସୀ ଚାଳନା କରି ବିଦେଶୀ ଶାସକର ଆସନ ଦୋହଲାଇ ଦେଇ ଲେଖିଥିଲେ -

'ଅରି ଫେରି ନାହିଁ ଯୁଦ୍ଧ ସରି ନାହିଁ
ଆସ ମୋ' ଶିବିରେ ଆସ ଭାଇ
ହିମାଚଳ ଶିରେ ଶବଦ ଶୁଭଇ ଡର ନାହିଁ
ଆଉ ଡେରି ନାହିଁ ।
ଭକତ କେ ଅଛ ବେଦୀ ପୂଜା କର
ରକତ ମନ୍ଦାର ଢାଳି ଦେଇ
ତରୁଣ କେ ଅଛି ମରଣକୁ ଦଳି
ଦେବତା ପରାଏ ଉଠ ଚେଇଁ ।'

କବି କୁନ୍ତଳା କୁମାରୀ ସାବତ ନାରୀ ଶକ୍ତିର ଅଭ୍ୟୁଦୟ ପାଇଁ ଚେତନାର ବାର୍ତ୍ତାରେ ମୁକ୍ତି ସଂଗ୍ରାମକୁ ଆଗେଇ ନେଲେ । ଘରକୋଣ ଛାଡ଼ି ସମାଜର ଆକଟ ବନ୍ଧନ ଭୁଲି କୂଳବଧୂମାନେ ରାଜପଥକୁ ଓହ୍ଲେଇ ଆସିଲେ -



'ଆମେ ନାରୀଗଣ କୋଣରୁ ବାହାରି
ଧରିବୁ ଅସହଯୋଗ ତରବାରୀ ।'
ଭାରତର ନାରୀ ନୋହୁ ଆମେ ହୀନା
ଷୋଳକୋଟି ଆମେ ନୋହୁ ଅତି କ୍ଷୀଣା
ସାଧନ ଆମର ଭାରତ ଉଦ୍ଧାର
ମହାଶକ୍ତି ଅସ୍ତ୍ରେ ମ୍ଲେଛର ସଂହାର
ଉଠ ଭାରତର ବୀରପୁତ୍ର ଯାକ
ସେନାପତି ଆଜି ଦେଇଛନ୍ତି ଡାକ ।

ଭକ୍ତକବି ମଧୁସୂଦନ ରାଓ ପ୍ରଚଣ୍ଡ ଦେଶପ୍ରେମର ଗାଥାରେ ସ୍ୱାଧୀନତାର ସ୍ରୋତକୁ ସ୍ରୋତସ୍ୱିନୀ କରି ଉତ୍କଳବାସୀମାନଙ୍କ ମନରେ ପ୍ରବଳ ଜାତୀୟତାବୋଧ ସୃଷ୍ଟି କରିପାରିଥିଲେ । ତାଙ୍କ ସୃଷ୍ଟି ସମଗ୍ର ହେଲା 'ପୃଥିବୀ ପ୍ରତି', 'ଭାରତ ଭାବନା', 'ଭାରତ ବନ୍ଦନା', 'ଉତ୍କଳ ବନ୍ଦନା', 'ଜନ୍ମଭୂମି ଇତ୍ୟାଦି ।

ତୁହି ମା' ଜନମ ଭୂମି ପବିତ୍ର ଉତ୍କଳଭୂମି
ତୋହର ସନ୍ତାନ ଆମେ ଅଟୁ ସରବେ
ତୋର ଶ୍ରୀଚରଣ ସେବା ପାଇଁ ମନପ୍ରାଣ ଦେବା
ଗାଇବା ତୋହର ନାମ ଆନନ୍ଦ ରବେ
ତୋ' ଆନନ୍ଦେ ହୋଇବା ସୁଖୀ
କାନ୍ଦିବା ଦୁଃଖରେ ତୋର ହୋଇଣ ଦୁଃଖୀ ।

ସାଲିସ ବିହୀନ, ଅଗ୍ନିବର୍ଷୀ କବି ବାରୁଦ ଗଦାରେ ନିଆଁ ଜାଳିଦେବା ଶକ୍ତିଧର । ଅନ୍ୟାୟ ଓ ଅନୀତି ବିରୁଦ୍ଧରେ ଉଚ୍ଚସ୍ୱରରେ ସେ ପ୍ରତିବାଦ କରିବାର ସଂକଳ୍ପରେ ଜନ୍ମ ଯୋଗଜନ୍ମା । ମରଣଜୟୀ କବି ବାଞ୍ଛାନିଧି ମହାନ୍ତି ଜାତୀୟକବି ଲେଖିଲେ -

'କହ କହ କେଉଁ ଜାତି ପାଇଛି ମୁକତି କରି ହୁରି ହାରି ଗୁହାରୀ
କହ ପାଇଛି କେ ସୁଖ ଲିଭାଇଛି ଦୁଃଖ ମାଗି ମାଗି ପଥ ଭିକାରୀ
ଯେବେ ବାଘ ମୁହେଁ ପଡ଼େ ଶୀକାର ମିନତିରେ ପାଏ କି ସେ ଉଧାର
ଛାଡ଼ିବି ଦିଏ କେବେ ଧୀବର ଜାଲରୁ ନଗଲେ ମୀନ ଆପେ ବାହାରି
ଅଭିମନ୍ୟୁ ପରି ଘେରି ଚଉଦିଗୁ ଜନନୀ କୁମାରୀ
ଆତ୍ମଶକ୍ତି ସୁବିକାଶ ସୁଦର୍ଶନ ଚକ୍ରଟି କରିଦେବ ପାରି ।'

ଭାରତର ମୁକ୍ତି ସଂଗ୍ରାମର ଉତ୍କଳପ୍ରଥମ ଦେଶଭକ୍ତ ଯେ ମାଆ ମାଟି ପାଇଁ ନିର୍ମମ ଭାବେ ପ୍ରାଣଦଣ୍ଡ ଲଭି ଶହୀଦ ହୋଇଥିଲେ ସେ ଗଜପତି ରାଜାଙ୍କର ରାଜଗୁରୁ ପରାମର୍ଶଦାତା କୃଷ୍ଣଚନ୍ଦ୍ର ରାଜଗୁରୁ ମହାପାତ୍ର । ଯାହାଙ୍କୁ ଜୟୀ ରାଜଗୁରୁ ଭାବେ ସମସ୍ତେ ଜାଣନ୍ତି । ବାଜି ରାଉତ, ରଘୁ ଦିବାକର, ବିର୍ସାମୁଣ୍ଡା, ଲକ୍ଷ୍ମଣ ନାଏକ, ବାସୁବିସୁନି, ବୀର ସୁରେନ୍ଦ୍ର ସାଏ, ବାଘା ଯତୀନ, ବକ୍ସି ଜଗବନ୍ଧୁ, ଚନ୍ଦନ ହଜୁରୀ ପ୍ରଭୃତି ଉତ୍କଳମାତାର ବରେଣ୍ୟ ଅମର ସନ୍ତାନ ।

କାନ୍ତକବିଙ୍କ କବିତା ସମର ତରଙ୍ଗ ପରି ଉତ୍ତାଳ ଓ ମର୍ମଭେଦୀ । ସେ ସୁପ୍ତଜାତିକୁ ଉତ୍‌ଥିତ କରିବାକୁ ଶାଣିତ ଶବଦରେ ଝଙ୍କୃତ କରିଛନ୍ତି -

'ଗର୍ଜିଉଠୁଛି ତୂର୍ଯ୍ୟନାଦ ଉଠୁଛି ବିଜୟଜୈତ୍ର
ଆର୍ଯ୍ୟବାହିନୀ ଆସୁଛି ବର୍ଜି ସମର କ୍ଷେତ୍ର
ବଜାଅ ବଜାଅ ବିଜୟ ଶଙ୍ଖ, ଗାଅ ଭାରତର ଜୟ
ଚନ୍ଦ୍ର ସୂର୍ଯ୍ୟ କମ୍ପିତ ହେଉ ଗର୍ଜୁ ଅବନୀମୟ ।
କହିଚି ଝଞ୍ଜା ମସ୍ତକେ ତା'ର ହୋଇଛି ଅଗ୍ନିବୃଷ୍ଟି
ସତ୍ୟପଥରୁ ନିମିଷକ ପାଇଁ ଫେରାଇ ନାହିଁ ସେ ଦୃଷ୍ଟି ।
ଜନ୍ମଭୂମି ମୁକ୍ତି ଯଜ୍ଞେ ଅର୍ପି ହୃଦୟେ ରକ୍ତ
ଗୌରବଟୀକା ଘେନିଛି ଭଲେ ସ୍ୱଦେଶ କରିଣ ମୁକ୍ତ ।'

ଉତ୍କଳକେଶରୀ ହରେକୃଷ୍ଣ ମହତାବଙ୍କର ଅବଦାନକୁ ଓଡ଼ିଆ ଜାତି ଚିରସ୍ମରଣ ରଖିବ । ଜଣେ ଶ୍ରେଷ୍ଠ ରାଜନେତା, ଲେଖକ ଏବଂ ସ୍ୱାଧୀନତା ସଂଗ୍ରାମୀ ଭାବେ ଭାରତରେ ପରିଚିତ ଜାତୀୟବାଦୀ ମହତାବ ଲେଖିଛନ୍ତି -

ଦେଶ ଦେଶ ବୋଲି କାହାକୁ ଡାକୁଚୁ
ଦେଶତ ବିଦେଶୀ ଶୃଙ୍ଖଳାରେ ବନ୍ଧା
ଖୋଜିଲେ ମିଳିବ ନାହିଁରେ ।
ତୁ ଏ ଦେଶ ରାଜା ତୁ ଏ ଦେଶ ପ୍ରଜା
ତୋ' ଉପରେ କେହି ନାହିଁରେ
ସ୍ୱରାଜପରେ ଆଗେଇ ଗଲେ ତୁ ସ୍ୱଦେଶକୁ ଯିବୁ ପାଇରେ ।

ଗଣକବି ବୈଷ୍ଣବ ପାଣିଙ୍କ ପ୍ରତିଭା ଓ ଶବ୍ଦ ସର୍ଜନା ଚାତୁରୀ ହୃଦୟଭେଦୀ । ସେ ଭାଷା ସାହିତ୍ୟର କାଣ୍ଡାରୀ । ଗୀତିନାଟ୍ୟ ଭିତରେ ସେ ଦେଶର ସ୍ୱାଧୀନତା ସଂଗ୍ରାମର ମୁକ୍ତିଗାଥା ତଥା ଓଡ଼ିଆ ଜାତିର ପ୍ରାଣ ଓଡ଼ିଆ ଭାଷା ଓ ସଂସ୍କୃତିର ଜାଗ୍ରତ ପ୍ରହରୀ ଥିଲେ । ସେ ଲେଖିଛନ୍ତି -

'ପୋଡ଼ି ଯାଉରେ ଇଂରାଜୀ ଅମଳ ହରି ନେଇଗଲା ଦେଶୁ
ଟଙ୍କା ସୁନା ଦେହରୁ ହରିଲା ଆମର ବଳ

ପୋଡ଼ିଯାଉରେ ପୋଡ଼ା ଚାକିରି ନିଶା
ପର ଅଇଁଠାକୁ ପରଗୋଇଠାକୁ
କେଉଁ ସୁଖ ପାଇଁ ବଳାଅ ଆଶା,
ଗୋଲାମି ଆଶାରେ ସଲାମି ଦେଉଛ
ଖାଇବାକୁ ଶେଷେ କଲମ ଭୁଷା,
ପଲମ ମୁଣ୍ଡାକୁ ସଲାମ କରୁଥା
କଇର କାଳକ କଲମ ଚଷା ।

ବୈଷ୍ଣବ କବି ନଜରୁଲ, ଚାରଣ କିବ କୁମୁଦ ଦାସ, ବାଞ୍ଛାନିଧି, ବୀର କିଶୋରଙ୍କ ପରି ଗଣକବି ବିଭିନ୍ନ ଜାଗାରେ ବୁଲି ବୁଲି ଯାତ୍ରା, ସୁଆଙ୍ଗ, ଗୀତାଭିନୟ କରି ଲୋକମାନଙ୍କୁ ସ୍ୱାଧୀନତା ସଂଗ୍ରାମର ଗାନ୍ଧୀବାର୍ତ୍ତା ପ୍ରଚାର କରିବା କ୍ଷେତ୍ରରେ ପ୍ରମୁଖ ଭୂମିକା ନେଇଥିଲେ । ଗଣକବି ଗାଉଥିଲେ -

'ଭାରତ ବୀରେ ବିରତ ନୁହଁ ତୁରିତେ ଭିଡ଼ ଅଣ୍ଟା,
ଚିରତ ନୁହେଁ କାହାର ଏ ଦେହ ବଜାୟ ବିଜୟ ଘଣ୍ଟା ।
ବର୍ଜନ କର ପ୍ରାଣ ମମତା ଅର୍ଜନ କର ଯଶ,
ଅହିଂସାର ଏହି ଗର୍ଜନ ଶୁଣ କମ୍ପାଏ ଦଶ ଦିଶ ।'

କେତେ ଉଦାର ସେ ପ୍ରାଣ, ଗରୀୟାନ କବି ସଭା ନତୁବା ସେ କି ଲେଖିପାରେ ସୃଷ୍ଟି କରିପାରେ କାଳଜୟୀ କବିତା -

'ମିଶୁ ମୋର ଦେହ ଏ ଦେଶ ମାଟିରେ
ଦେଶବାସୀ ଚାଲି ଯାଆନ୍ତୁ ପିଠିରେ
ଦେଶର ସ୍ୱରାଜ୍ୟ ପଥେ ଯେତେ ଗାଡ଼
ପୁରୁ ତହିଁ ପଡ଼ି ମୋର ମାଂସ ହାଡ଼ ।'

(ଗୋପବନ୍ଧୁ)

ଜାତୀୟ ମମତା ଅତି ଉଗ୍ର ଭାବରେ ରୂପ ନେଇଥିଲା । ଉତ୍କଳ ଜନନୀର ସେବା ଯେ ସମଗ୍ର ବିଶ୍ୱର ସେବା ତାହା ସେ ବିବେଚନା କରୁଥିଲେ । ଉଦାର ସାର୍ବଜନୀନ ମାନବିକତାକୁ ସେ ବୁଝିଥିଲେ ଓ ବୁଝାଇଥିଲେ ।

'ନିଜ ସ୍ୱାର୍ଥ ଲାଗି ଜାତ ନୁହେଁ ହିନ୍ଦୁ
ବିଶ୍ୱ ହିତେ ହିନ୍ଦୁ ପ୍ରତି ରକ୍ତ ବିନ୍ଦୁ,
ଜାତୀୟ ମମତା ବିଶ୍ୱଜନ ପ୍ରୀତି
ଉତ୍କଳବାସୀର ହେଉ ତାହା ନୀତି ।'

'ଆଶ୍ରମ'
ଶ୍ରୀବିହାର କଲୋନୀ, କଟକ-୮

---

## ଡଃ କିଷନ୍ କାନୁନ୍‌ଗୋଙ୍କ ବିୟୋଗରେ ମୁଖ୍ୟମନ୍ତ୍ରୀଙ୍କ ଶୋକ

ସମାଜ ବିଜ୍ଞାନୀ ଡଃ କିଷନ୍ କାନୁନ୍‌ଗୋଙ୍କ ବିୟୋଗରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଗତ ଜୁଲାଇ ୮ ତାରିଖରେ ଗଭୀର ଶୋକ ପ୍ରକାଶ କରିଥିଲେ । ଏକ ଶୋକ ବାର୍ତ୍ତାରେ ମୁଖ୍ୟମନ୍ତ୍ରୀ କହିଥିଲେ ଯେ, ସ୍ୱର୍ଗତଃ କାନୁନ୍‌ଗୋ ଦେଶର ଜଣେ ଖ୍ୟାତନାମା ସମାଜ ବିଜ୍ଞାନୀ ଥିଲେ ଏବଂ ବିଭିନ୍ନ ଦାରିଦ୍ର୍ୟ ଦୂରୀକରଣ ଯୋଜନା ପ୍ରସ୍ତୁତିରେ ତାଙ୍କର ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ଯୋଜନା କମିଶନର ସଦସ୍ୟ ତଥା ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର କୁଳପତି ଭାବେ ଅନେକ ବାସ୍ତବବାଦୀ ପଦକ୍ଷେପ ନେଇ ସେ ତାଙ୍କର ଦୂରଦର୍ଶିତାର ପରିଚୟ ଦେଇଥିଲେ । ତାଙ୍କ ମୃତ୍ୟୁରେ ଦେଶ ତଥା ରାଜ୍ୟ ଜଣେ ସୁଯୋଗ୍ୟ ସନ୍ତାନଙ୍କୁ ହରାଇଲା ବୋଲି ମୁଖ୍ୟମନ୍ତ୍ରୀ କହିଥିଲେ । ମୁଖ୍ୟମନ୍ତ୍ରୀ ସ୍ୱର୍ଗତଃ ଆତ୍ମାର ସଦ୍‌ଗତି କାମନା କରିବା ସହିତ ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ଉଦ୍ଦେଶ୍ୟରେ ଗଭୀର ସମବେଦନା ଜ୍ଞାପନ କରିଥିଲେ ।

# ସ୍ୱାଧୀନତା ସଂଗ୍ରାମର ପୁଣ୍ୟପୀଠ ବରୀ ଆଶ୍ରମ

ଗିରିଧାରୀ ସ୍ୱାଇଁ

ମୁକ୍ତି ପିପାସା ମଣିଷର ସହଜାତ ପ୍ରବୃତ୍ତି । ଦାର୍ଶନିକ ରୁଷୋ କହିଥିଲେ- 'ମଣିଷ ମୁକ୍ତ ଭାବରେ ଜନ୍ମ ଗ୍ରହଣ କରେ, ମାତ୍ର ସେ ସର୍ବତ୍ର ଶୃଙ୍ଖଳ ବଦ୍ଧ ।' ଲୋକମାନ୍ୟ ତିଳକଙ୍କ ଭାଷାରେ 'ସ୍ୱାଧୀନତା ମଣିଷର ଜନ୍ମଗତ ଅଧିକାର ।' ମୁକ୍ତିକାମୀ ମଣିଷର କ୍ରାନ୍ତିକାରୀ ଆନ୍ଦୋଳନ ଯୁଗେ ଯୁଗେ ସ୍ୱତନ୍ତ୍ର ଇତିହାସ ସୃଷ୍ଟି କରିଛି । କୌଣସି ଦେଶ ଓ ଜାତିର ମୁକ୍ତି ସଂଗ୍ରାମ ଓ ଲହୁ ଲୁହର କାହାଣୀ ଅତ୍ୟନ୍ତ ଗୌରବାବହ ଘଟଣା । ସେହି କାହାଣୀକୁ ଲିପିବଦ୍ଧ କରି ଆଲୋକକୁ ଆଣିବା ଲେଖକର ଜାତୀୟ କର୍ତ୍ତବ୍ୟ । ଏହି ସ୍ୱାଧୀନତା ସଂଗ୍ରାମରେ କେତେ ବୀର ପୁରୁଷ ହସି ହସି ଦେଶ ଜାତି ପାଇଁ ପ୍ରାଣବଳି ଦେଇଛନ୍ତି । ସେମାନଙ୍କ ଉଷ୍ମ ରକ୍ତରେ ଜାତି ଇତିହାସ ଆଜି ରକ୍ତ ରଂଜିତ । ସେହି ଜନନୀ ଜନ୍ମଭୂମି ଆଜି ରକ୍ତତୀର୍ଥ । ବୀରପ୍ରସୂ ସେହି ଅମର ଶହୀଦମାନଙ୍କୁ କୋଳାଗ୍ରତ କରି ଜନନୀ ଜନ୍ମଭୂମି ଆଜି ଗର୍ବିତା ।

୧୮୫୭ ମସିହାର ସିପାହୀ ବିଦ୍ରୋହ ଥିଲା ଭାରତର ପ୍ରଥମ ଜନଜାଗରଣ । ଏହି ଜନଜାଗରଣ କେବଳ ମିରଟ, କାନପୁର, ଲକ୍ଷ୍ନୌ, ବାରାଣସୀ, ଦିଲ୍ଲୀ, କଲିକତା ପରି ବଡ଼ ବଡ଼ ସହରରେ ସୀମିତ ନ ରହି ପ୍ରସାରି ଯାଇଥିଲା ଓଡ଼ିଶାର ପୁରପଲ୍ଲୀକୁ । ସମ୍ବଲପୁର ଭୂଇଁର ବୀର ସୁରେନ୍ଦ୍ର ସାଏ ଓ ଜଗନ୍ନାଥ ଧାମର ଚାଖି ଖୁଣ୍ଟିଆ ଯେତେବେଳେ ଦେଶଦ୍ରୋହୀ ଭାବରେ ଇଂରେଜମାନଙ୍କଦ୍ୱାରା ବନ୍ଦୀ ହୋଇ ଥିଲେ, ଠିକ୍ ସେତିକି ବେଳେ ଅବିଭକ୍ତ କଟକ ଜିଲ୍ଲାର ବରୀ ଅନ୍ତର୍ଗତ ବାଲିଆ ଗ୍ରାମର ଜମିଦାର ରାମକୃଷ୍ଣ ସାମନ୍ତ ସିଂହାର ବିଦେଶୀ ସରକାରଙ୍କ ବିରୋଧରେ ସ୍ୱର ଉତ୍ତୋଳନ କରିଥିଲେ । କଟକ ମାଜିଷ୍ଟ୍ରେଟ ଆର୍.ଏନ୍. ସୋର୍ ୧୮୫୭ ମସିହା ଅଗଷ୍ଟ ଦୁଇ ତାରିଖରେ ପ୍ରଦାନ କରିଥିବା ରିପୋର୍ଟରୁ ଜଣାଯାଏ ଯେ, ବାଲିଆର ରାମକୃଷ୍ଣ ସାମନ୍ତ ସିଂହାର (ବିଦଗ୍ଧ କବି ଅଭିମନ୍ୟୁ ସାମନ୍ତ ସିଂହାରଙ୍କ ପ୍ରପିତାମହ) କଟକ ଜିଲ୍ଲା ଖଣ୍ଡାୟତମାନଙ୍କର ନେତୃତ୍ୱ ନେଇ ଇଂରେଜମାନଙ୍କ ବିରୋଧରେ ସଂଗ୍ରାମ ଚଳାଇଥିଲେ । ସେ ଖଣ୍ଡାୟତ ଯୁବକମାନଙ୍କୁ ଯୁଦ୍ଧ ବିଦ୍ୟା ତାଲିମ୍ ଦେଇ ଏକ ସଶସ୍ତ୍ରବାହିନୀ ପ୍ରସ୍ତୁତ କରି ରଖିଥିଲେ । ଇଂରେଜ ସରକାର ଏ ଗୁପ୍ତ ଖବର ପାଇ ବାଲିଆକୁ ସୈନ୍ୟ ପଠାଇଥିଲେ । ସୈନ୍ୟମାନେ ବାଲିଆ ଘେରାଉ କରି ରାମକୃଷ୍ଣ ଓ ତାଙ୍କର ଦୁଇଜଣ ସହଯୋଗୀ ଉପେନ୍ଦ୍ର ଜେନା ଓ ଦୀନବନ୍ଧୁ ମହାପାତ୍ରଙ୍କୁ ବନ୍ଦୀ କଲେ । ସେମାନଙ୍କ ଅସ୍ତ୍ରାଗାର ଓ ଶାଣିତ ଅସ୍ତ୍ରଶସ୍ତ୍ର ଜବତ କରାଗଲା । ଏକ ସ୍ୱତନ୍ତ୍ର ଟ୍ରିବ୍ୟୁନାଲରେ ସେମାନଙ୍କ ବିଚାର ହେଲା । ରାମକୃଷ୍ଣ ଓ ଦୀନବନ୍ଧୁଙ୍କୁ ପାଞ୍ଚ ବର୍ଷ ଲେଖାଏଁ ସଶ୍ରମ କାରାଦଣ୍ଡ ଆଦେଶ ହେଲା । ସେମାନଙ୍କ ସଂପତ୍ତି ବ୍ୟାଜ୍ୟାପ୍ତି କରାଗଲା । ସୌଭାଗ୍ୟବଶତଃ ପ୍ରମାଣ ଅଭାବରୁ ଉପେନ୍ଦ୍ର ଜେନା ମୁକ୍ତି ପାଇଲେ । ଇଂରେଜ ସରକାରଙ୍କ ବିରୋଧରେ ସଂଗ୍ରାମ କରି ରାମକୃଷ୍ଣ ସାମନ୍ତ ସିଂହାର ଯେଉଁ ସ୍ୱଦେଶପ୍ରୀତି ଓ ସାହସିକତାର ପରିଚୟ ଦେଇଛନ୍ତି, ତାହା ଭୁଲିବ କିଏ ? ଭାରତୀୟ ପ୍ରଥମ ମୁକ୍ତି ସଂଗ୍ରାମରେ ଏହା ଥିଲା, ବରୀର ପ୍ରଥମ ଅବଦାନ, ବରୀ ଜନ ଜାଗରଣର ପ୍ରଥମ ଭିତ୍ତି ପ୍ରସ୍ତର ।

ବିପ୍ଳବର ନିଆଁ ସହଜେ ଲିଭେ ନାହିଁ । ସିପାହୀ ବିଦ୍ରୋହ ପରେ ପରେ ଜନ ଜାଗରଣର କୁହୁଳା ନିଆଁ ଇଂରେଜ ସରକାରଙ୍କୁ ବ୍ୟତିବ୍ୟସ୍ତ କରି ପକାଇଲା । ଗୋପବନ୍ଧୁ ଚୌଧୁରୀଙ୍କ ବରୀ ଆଗମନ ପୂର୍ବରୁ କୃଷ୍ଣନଗର ଗ୍ରାମର ସ୍ୱର୍ଗୀୟ ଧ୍ରୁବଚରଣ ରାୟ, ବିଚିତ୍ରାନନ୍ଦ ଶୁକ୍ଳ, ବୀର କିଶୋର ରାୟ ପ୍ରମୁଖ ସେଠାରେ 'ସତ୍ୟ ସମାଜ' ନାମକ ଏକ ଅନୁଷ୍ଠାନ ଗଠନ କରି, ଜାତୀୟ ଜାଗରଣ ବାର୍ତ୍ତା ପ୍ରଚାର କରୁଥିଲେ ।

ବରୀ, ଔରଙ୍ଗାବାଦ, ରମ୍ଭା, ପଘିରା, ବାଗଦା, ଅନ୍ୟାସପୁର, ଅଟିରା, ରତଳାଙ୍ଗ, ହାଟସାହି ପ୍ରଭୃତି ଗ୍ରାମରେ ସେହି ଜନଜାଗରଣ କ୍ରମେ ପୁଞ୍ଜିଭୂତ ହେଉଥାଏ । ସେହିପରି ଏକ ଘଡ଼ିସନ୍ଧି ମୁହୂର୍ତ୍ତରେ ଗୋପବନ୍ଧୁ ଚୌଧୁରୀ ବରୀ ଆଗମନ କରି ଏକ ସେବାଘର (ବରୀ ଆଶ୍ରମ) ପ୍ରତିଷ୍ଠା କଲେ । ବରୀ ଅଞ୍ଚଳରେ ଗାନ୍ଧୀ ବାର୍ତ୍ତା ପ୍ରଚାରିତ ହେଲା । ରଚନାତ୍ମକ କାର୍ଯ୍ୟକ୍ରମ ବ୍ୟାପକ ହେଲା । ସେହି କାର୍ଯ୍ୟକ୍ରମ ଜନଜାଗରଣ ଓ ସ୍ୱାଧୀନତା ସଂଗ୍ରାମକୁ ସଂଗଠିତ କଲା । କର୍ମୀମାନଙ୍କୁ ଜାତୀୟ ଭାବଧାରାରେ ପ୍ରଭାବିତ କଲା ।

ସେହି ସେବାଘର ବା ବରୀ ଆଶ୍ରମ ଥିଲା ସ୍ୱାଧୀନତା ସଂଗ୍ରାମୀମାନଙ୍କ ସାଧନା ପୀଠ । ଭାରତର ବହୁ ବରେଣ୍ୟ ନେତୃବୃନ୍ଦ, ବିଭିନ୍ନ ସମୟରେ ସେହି ମାଟିରେ ପଦାର୍ପଣ କରି ଏହାର ଗୌରବ ବୃଦ୍ଧି କରିଛନ୍ତି । ଭାରତର ଅନ୍ୟାନ୍ୟ ସାଧନା ପୀଠଠାରୁ ବରୀର

ଅବଦାନ କିଛି କମ୍ ନୁହେଁ, ଏକଥା ସମସ୍ତେ ମୁକ୍ତ କଣ୍ଠରେ ସ୍ୱୀକାର କରିଛନ୍ତି । ଉତ୍କଳମଣି ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ଗୋଦାବରୀଶ ମିଶ୍ର, ବିନୋଦ କାନୁନ୍‌ଗୋ, ଆଚାର୍ଯ୍ୟ ହରିହର ଦାସ, ହରେକୃଷ୍ଣ ମହତାବ, ମନମୋହନ ଚୌଧୁରୀ, ରମାଦେବୀ, ଅନ୍ନପୂର୍ଣ୍ଣା ମହାରଣା, ଜାତୀୟକବି ବାଞ୍ଛାନିଧି ମହାନ୍ତି ପ୍ରମୁଖ ମହାନ୍ ବ୍ୟକ୍ତିମାନେ ସେଠାରେ ପଦାର୍ପଣ କରି ବରୀ ସଂଗ୍ରାମୀମାନଙ୍କୁ ଜାତୀୟ ମହାସ୍ରୋତରେ ସାମିଲ କରିଛନ୍ତି । ସେମାନଙ୍କ ପ୍ରେରଣା ଲାଭ କରି ବରିବାସୀ, ଦେଶପ୍ରେମ ବହ୍ନିରେ ଝାସ ଦେଇଛନ୍ତି । ୧୯୩୪ ମସିହାରେ ସେହି ମାଟିରେ ମହାତ୍ମା ଗାନ୍ଧୀଙ୍କର ହରିଜନ ପଦଯାତ୍ରାର ପ୍ରଭାବ ଲୋକମାନଙ୍କୁ ଆହୁରି ପ୍ରେରଣା ଦେଇଛି ।

୧୯୪୨ ମସିହାରେ ଗାନ୍ଧିଜୀ 'ଭାରତ ଛାଡ଼' ଆନ୍ଦୋଳନର ଡାକରା ଦେଲେ । ଇଂରେଜ ସରକାର ଗାନ୍ଧିଜୀ, ନେହରୁ ଆଦି ବଡ଼ ବଡ଼ ନେତାଙ୍କୁ ଗିରଫ କରି ନେଲେ । ସମଗ୍ର ଓଡ଼ିଶାରେ 'ଭାରତ ଛାଡ଼' ଆନ୍ଦୋଳନ ଉଗ୍ରରୂପ ଧାରଣ କଲା । ବାଲେଶ୍ୱର ଜିଲ୍ଲା ଇରମ୍ ଓ ଲୁଣିଆଠାରେ ପୋଲିସ୍ ଗୁଳିରେ ସଂଗ୍ରାମୀମାନେ ଶହୀଦ ହେଲେ । ଢେଙ୍କାନାଳର ନଦୀଘାଟରେ ବାଜି ରାଉତ ପୁଲିସ୍ ଗୁଳିରେ ପ୍ରାଣବଳି ଦେଲେ । ପୁରୀ, ନିମାପଡ଼ା, ବାଣପୁର, ଖୁରୁଧା ଆଦି ସ୍ଥାନମାନଙ୍କରେ ନିଆଁ ଜଳିଲା । ଏଥିପୂର୍ବରୁ କେନ୍ଦୁଝରର ଭୂୟାଁ ଆନ୍ଦୋଳନ, କୋରାପୁଟର କୋୟା ଆନ୍ଦୋଳନ, ଗଡ଼ଜାତର ପ୍ରଜାମଣ୍ଡଳ ଆନ୍ଦୋଳନରେ ଅତ୍ୟାଚାରୀ ବେଜେଲ ଗେଟ୍‌ଙ୍କୁ ହତ୍ୟା ଯୋଗୁଁ ବିପ୍ଳବୀ ରଘୁନାଥ ମହାନ୍ତି ଓ ଦିବାକର ପରିଡ଼ାଙ୍କୁ ଫାଶି ଇତ୍ୟାଦି ଘଟଣା, କେବଳ ବରୀ କାହିଁକି ସମଗ୍ର ଭାରତୀୟମାନଙ୍କ ପ୍ରାଣରେ ଅପୂର୍ବ ଉନ୍ମାଦନା ଓ ଜାତୀୟ ଚେତନା ଜାଗ୍ରତ କଲା । ବରୀ ପାଖାପାଖି ଅଞ୍ଚଳ କନିକା । ସେଠାରେ ଅକଥନୀୟ ଅତ୍ୟାଚାର ପ୍ରତିବାଦରେ ପ୍ରଜା ଆନ୍ଦୋଳନ ଗଢ଼ି ଉଠିଲା । ପୋଲିସ୍ ଗୁଳିରେ ଦେଶପ୍ରେମୀ ବାସୁ, ବିସୁନୀ ଶହୀଦ ହେଲେ । ସେହିସବୁ ଘଟଣାବଳୀ ବରୀ ସଂଗ୍ରାମୀମାନଙ୍କୁ ଉତ୍ତେଜିତ ଓ ଉଦ୍‌ବେଳିତ କଲା ।

ବରୀରେ ରମାଦେବୀ ଓ ଗୋପବନ୍ଧୁ ଚୌଧୁରୀଙ୍କ ନେତୃତ୍ୱରେ ପରିଚାଳିତ ସେବାଘର (ଆଶ୍ରମ) ସ୍ୱଦେଶୀ ଆନ୍ଦୋଳନ ଓ ଗାନ୍ଧୀଙ୍କ ବାର୍ତ୍ତା ପ୍ରଚାରରେ ପ୍ରମୁଖ ଭୂମିକା ଗ୍ରହଣ କରିଥିଲା । ସେହି ମାଟିର ବହୁ ଦେଶପ୍ରେମୀ, ସ୍ୱାଧୀନତା ସଂଗ୍ରାମୀ ମୁଖ୍ୟ ଭୂମିକା ଗ୍ରହଣ କରିଥିଲେ । ସେମାନଙ୍କ ମଧ୍ୟରୁ ଉମାଚରଣ ମହାନ୍ତି, ଗଣେଶ୍ୱର ଦାସ, ଗୋବର୍ଦ୍ଧନ ପୁହାଣ, ଭାଗୀରଥି ଦାସ, ହଳଧର ସାହାଣୀ, ଇନ୍ଦ୍ରମଣି ମହାନ୍ତି, ବିପିନି ବିହାରୀ ମହାନ୍ତି, ବିଚିତ୍ରାନନ୍ଦ ଶୁକ୍ଳ, ଧ୍ରୁବଚରଣ ରାୟ, ବାସୁଦେବ ସାମଲ, କ୍ଷେତ୍ରବାସୀ ପଣ୍ଡା, ବାମନ ଚରଣ ଦାସ, ଆର୍ତ୍ତବନ୍ଧୁ ମହାନ୍ତି, ପୂର୍ଣ୍ଣଚନ୍ଦ୍ର ଚୌଧୁରୀ, ଗୋଲଖଚନ୍ଦ୍ର ମହାନ୍ତି, ବୀର ରଥ, ଆକୁଳାନନ୍ଦ ମେକାପ, ସୁଶିଳା ଦେବୀ, ପ୍ରିୟମ୍ବଦା ଦେବୀ ଓ ଛାୟା ଦେବୀ ପ୍ରମୁଖଙ୍କ ସହିତ ଆହୁରି ଅନେକ ସତ୍ୟାଗ୍ରହୀ ବରୀ ମାଟିରେ ସ୍ୱାଧୀନତା ସଂଗ୍ରାମର ଲେଲିହାନ ଶିଖା ଜାଳି ରଖିଥିଲେ । ଜାତୀୟ କବି ବାଞ୍ଛାନିଧି ମହାନ୍ତିଙ୍କ ଦେଶାତ୍ମବୋଧକ ସଂଗୀତ ଓ ଭାଗୀରଥି ଦାସଙ୍କ ଗୁରୁ ଗମ୍ଭୀର ଓଜସ୍ୱିନୀ ଭାଷଣ ଲୋକମାନଙ୍କୁ ବେଶ୍ ମତାଉଥିଲା । ବରି ଆଶ୍ରମ ମାଧ୍ୟମରେ ହରିଜନ ବସ୍ତି ସଫେଇ, ଛୁଆଁଅଛୁଆଁ ଭେଦଭାବ ଦୂରୀକରଣ, ନିଶାନିବାରଣ, ମୌଳିକ ଶିକ୍ଷା, ପ୍ରଚଳନ, ସୂତାକଟା ଓ ଖଦଡ଼ ଲୁଗା ପରିଧାନ, ବିଦେଶୀ ଦ୍ରବ୍ୟ ବର୍ଜନ ଇତ୍ୟାଦି ଗାନ୍ଧୀବାଦୀ କାର୍ଯ୍ୟକ୍ରମ ପରିଚାଳିତ ହେଉଥିଲା । ଦୂରଦୂରାନ୍ତରୁ ସଂଗ୍ରାମୀମାନେ ଆସି ଏଠାରେ ରାତ୍ରିଯାପନ କରୁଥିଲେ । ସେଠାରୁ ସ୍ୱାଧୀନ ସଂଗ୍ରାମର ଗୋପନ ବାର୍ତ୍ତା ପୁରପଲ୍ଲୀର ସଂଗ୍ରାମୀମାନଙ୍କ ପାଖକୁ ପଠାଯାଉଥିଲା । ସଂଗ୍ରାମୀମାନଙ୍କୁ ସେଠାରେ ତାଲିମ୍ ଦିଆଯାଉଥିଲା । ଆନ୍ଦୋଳନ ରଣକୌଶଳ ଏଠାରେ ପ୍ରସ୍ତୁତ କରାଯାଉଥିଲା ।

ସଂଗ୍ରାମୀମାନେ କେତେବେଳେ ସାପୁଆକେଳା ବେଶରେ, କେତେବେଳେ କେଳାକେଳୁଣୀ, ମାଙ୍କଡ଼ ନଚା, ଫକୀର ବେଶରେ ପୁଣି କେତେବେଳେ ସବାରିରେ ବୋହୂ ବେଶରେ ଯାଇ ଗୋପନରେ କାର୍ଯ୍ୟ ହାସଲ କରୁଥିଲେ ।

ଆନ୍ଦୋଳନ ବେଳେ ସତ୍ୟାଗ୍ରହୀମାନେ ପୋଲିସ୍ ଆଖିରେ ଧୂଳି ଦେଇ ଗୋପନରେ ଅନେକ କାର୍ଯ୍ୟ ହାସଲ କରୁଥିଲେ । ସଂଗ୍ରାମୀମାନେ କେତେବେଳେ ସାପୁଆକେଳା ବେଶରେ, କେତେବେଳେ କେଳାକେଳୁଣୀ, ମାଙ୍କଡ଼ ନଚା, ଫକୀର ବେଶରେ ପୁଣି କେତେବେଳେ ସବାରିରେ ବୋହୂ ବେଶରେ ଯାଇ ଗୋପନରେ କାର୍ଯ୍ୟ ହାସଲ କରୁଥିଲେ । ଏ ସମସ୍ତ କାର୍ଯ୍ୟକ୍ରମର ପୂର୍ବ ପ୍ରସ୍ତୁତି ଆଖଡ଼ା ଘର ଥିଲା ବରୀର ସେବାଘର । ସଂଗ୍ରାମୀମାନେ କିପରି ପୋଲିସ୍ ଆଖିରେ ଧୂଳି ଦେଇ ଅସାଧ୍ୟ କାର୍ଯ୍ୟ ସାଧନ କରୁଥିଲେ, ତାହା ନିମ୍ନ ଘଟଣାରୁ ଜଣାଯାଏ ।

୧୯୩୨ ମସିହା ଜାନୁଆରୀ ଛବିଶ ତାରିଖ ଘଟଣା । କଂଗ୍ରେସ ତରଫରୁ ନିର୍ଦ୍ଦେଶ ଥିଲା, ସତ୍ୟାଗ୍ରହୀମାନେ ପୁରପଲ୍ଲୀର ପ୍ରମୁଖ ସ୍ଥାନମାନଙ୍କରେ ଜାତୀୟ ପତାକା ଉଡ଼ାଇବେ । ବରୀର ଛଅଟି ସ୍ଥାନରେ ଜାତୀୟ ପତାକା ଉତ୍ତୋଳନ କରାଯିବ ବୋଲି ଆକୁଳି ମେକାପ ପୂର୍ବରୁ କଲେକ୍ଟରଙ୍କୁ ଜଣାଇ ଦେଇଥାନ୍ତି । ସତ୍ୟାଗ୍ରହୀମାନଙ୍କୁ ଏହା କରାଇ ନଦେବାକୁ ପୋଲିସ୍ ମୁତୟନ ହେଲେ । ପୋଲିସ୍ ଓ ସତ୍ୟାଗ୍ରହୀମାନଙ୍କ ମଧ୍ୟରେ ଚାଲିଲା ଛକାପଂଝା । ଅଲିପୁର ହାଟରେ, ପତାକା ଉଡ଼ାଯିବା ସ୍ଥାନରେ ପୋଲିସ୍ ଜଗି ଥାଆନ୍ତି । ସଂଗ୍ରାମୀ ଗୋବର୍ଦ୍ଧନ ପୁହାଣଙ୍କ ନିର୍ଦ୍ଦେଶରେ ହାଟଠାରୁ କିଛି ଦୂରରେ ପତାକା ଉତ୍ତୋଳନ କରାଗଲା । ପୋଲିସ୍ ଅଲିପୁର ହାଟଛାଡ଼ି ଏଠାକୁ ଧାଇଁ ଆସିଲେ ଏହି ସୁଯୋଗରେ ପୂର୍ବ ପ୍ରସ୍ତୁତିମତେ ସୁକୁରିଆ ଚମାର ଗୋଟିଏ ଉଚ୍ଚ ତାଳଗଛକୁ ଚଢ଼ି ଏଠାରେ ପତାକା ବାନ୍ଧିଲା ପୁଣି ଅନ୍ୟ ଏକ ଉଚ୍ଚା କଦମ୍ବ ଗଛରେ ପତାକା ଉଡ଼ାଗଲା ।

ସତ୍ୟାଗ୍ରହୀମାନେ ପୋଲିସ୍‌କୁ ବୋକା ବନେଇ, ସମସ୍ତ ସ୍ଥାନରେ ଏହିପରି ଭାବରେ ପତାକା ଉଡ଼ାଇଲେ । ପୋଲିସ୍ ନିରୁପାୟ ହୋଇ ବାହୁ କାମୁଡ଼ି ରହିଲେ । ଏ ସମସ୍ତ କାର୍ଯ୍ୟର ପୂର୍ବ ପ୍ରସ୍ତୁତି ଆଖଡ଼ା ଘର ଥିଲା, ଏଇ ବରୀ ଆଶ୍ରମ, ସତ୍ୟାଗ୍ରହୀମାନଙ୍କୁ ଆନ୍ଦୋଳନ ପାଇଁ ତାଲିମ୍ ଦେବାରେ ଏହାଥିଲା ଓଡ଼ିଶାର ଅନ୍ୟତମ 'ସାବରମତୀ' ଆଶ୍ରମ ପଞ୍ଜାବର ଜାଲିଆନା ବାଗ୍, ଇରମ୍ ପରି ବରୀରେ ମଧ ବହୁ ରୋମାଞ୍ଚକର ଘଟଣା ଘଟିଯାଇଛି । ଅମର ଶହୀଦ୍‌ମାନଙ୍କ ରକ୍ତରେ ଲାଲେ ଲାଲ ଏହି ମାଟିର ରୋମାଞ୍ଚକର କାହାଣୀକୁ ଭୁଲିବ କିଏ ?

**୧୯୪୨ ମସିହା ଭାରତଛାଡ଼ ଆନ୍ଦୋଳନ ପରେ କଂଗ୍ରେସ ଅନୁଷ୍ଠାନ ବେଆଇନ ଘୋଷିତ ହେଲା । ଓଡ଼ିଶାର ଅନ୍ୟ ଅଞ୍ଚଳ ପରି ବରୀ ଆଶ୍ରମକୁ ସରକାର ଦଖଲ କରି ନେଲେ । ବିଦ୍ରୋହୀ ଗୁଣନିଧି ମହାନ୍ତି ଓ ମଙ୍ଗଳା ସେନ୍‌ଗୁପ୍ତଙ୍କୁ ସେବାଘରଠାରେ ଗିରଫ କରାଯାଇ ଜେଲକୁ ପଠାଗଲା ।** ତା'ପରେ ସତ୍ୟାଗ୍ରହୀମାନେ କୌଣସି ସରକାରୀ ଅନୁଷ୍ଠାନ, କାର୍ଯ୍ୟାଳୟ ଚଳାଇ ଦେବେ ନାହିଁ ବୋଲି ଶପଥ ନେଲେ । ଆଗ କାର୍ଯ୍ୟ ଆରମ୍ଭ ହେଲା କାଇପଡ଼ା ପୋଷ୍ଟ ଅଫିସ୍ ଉପରେ । ୧୯୪୨ ମସିହା ଅଗଷ୍ଟ ମାସ ୧୬ ତାରିଖ ଦିନ, ବାସୁଦେବ ସାମଲ, ଋଷି ବେହେରା, ରାଧାକୃଷ୍ଣ ସାମଲ, ଭୁବନାନନ୍ଦ ସ୍ୱାଇଁ, ମଧୁସୂଦନ ପାହିଲି, ମଧୁସୂଦନ ନନ୍ଦ, କୃଷ୍ଣଚନ୍ଦ୍ର ସାହୁ ପ୍ରମୁଖ ସତ୍ୟାଗ୍ରହୀମାନେ ପୋଷ୍ଟ ଅଫିସ୍ ଘର ଭିତରେ ପଶି ସମସ୍ତ କାଗଜପତ୍ର ପୋଡ଼ି ଦେଲେ । ସରକାରୀ କେନ୍ଦ୍ର ଅଫିସ୍‌ରେ ହୁ ହୁ ହୋଇ ନିଆଁ ଜଳିଲା । ପୋଲିସ୍, ଦଫାଦାର ଚୌକିଦାରମାନଙ୍କ ପୋଷାକପତ୍ର, ଟ୍ୟାକ୍ସ କଲେକ୍ଟରଙ୍କ କାଗଜପତ୍ର, ବହି ବସ୍ତାନି ପୋଡ଼ି ଦିଆଗଲା । ବିଦ୍ରୋହୀମାନଙ୍କ ଅଚାନକ ଆକ୍ରମଣରେ ଅଳ୍ପ କେତେକ ପୋଲିସ୍ ପ୍ରମାଦ ଗଣିଲେ । ଚାଲିଲା ପୋଡ଼ା ଜଳା । ବିଦ୍ରୋହୀମାନଙ୍କ ଆନନ୍ଦ ଉତ୍ସାହ କହିଲେ ନସରେ ।

ଏହାର ପ୍ରତିକାର ନେବାକୁ ଅଗଷ୍ଟ ୨୫ ତାରିଖ ଦିନ ମାଜିଷ୍ଟ୍ରେଟ୍ ଗୋପାଳ ରାଓ ପଟ୍ଟନାୟକ ଓ ଡି.ଏସ୍.ପି. ଲକ୍ଷ୍ମଣ ମିଶ୍ରଙ୍କ ତତ୍ତ୍ୱାବଧାନରେ ତିନି, ଚାରି, ସେକ୍‌ସନ୍ ବନ୍ଧୁକଧାରୀ ଫଉଜ ପହଞ୍ଚିଲେ କାଇପଡ଼ା ସ୍କୁଲରେ । ତହିଁ ପରଦିନ ଗହ୍ମା ପୂର୍ଣ୍ଣିମା । ସକାଳୁ ସକାଳୁ ଫଉଜ ଚାଲିଲେ । ଯୁଦ୍ଧ ଚାନ୍ଦା ପାଇଁ ଲୋକମାନଙ୍କ ଉପରେ ଜୁଲମ ହେଲା । ପ୍ରତିବାଦ କରି ଲୋକମାନେ ଦଳ ଦଳ ହୋଇ କାଇପଡ଼ା ହାଟ ଉପରେ ଏକାଠି ହେଲେ । ସେଦିନ କାଇପଡ଼ାଠାରେ ସଭା ହେବାର ଥାଏ । ଚୁନି ଦେଈ (ଅନ୍ନପୂର୍ଣ୍ଣା ମହାରଣା) ଭାଷଣ ଦେବାକୁ ଆସିଥା'ନ୍ତି କାଇପଡ଼ା । ଅଳ୍ପ ସମୟ ମଧ୍ୟରେ ଚାରି ପାଞ୍ଚ ଶହ ଲୋକ ଜମା ହୋଇଗଲେ । ସେଠାରେ ସଭା ନକରି, ସେ ସ୍ଥାନ ଛାଡ଼ି ଚାଲି ଯିବାକୁ ପୋଲିସ୍ ହୁକୁମ୍ ଦେଲେ । କିନ୍ତୁ କେହି କର୍ଣ୍ଣପାତ କଲେ ନାହିଁ । ବରଂ ପ୍ରତିବାଦ କଲେ । ବିଚିତ୍ରାନନ୍ଦ ଶୁକ୍ଳ, ବିଦ୍ୟାଧର ରାୟ, ହୃଷିକେଶ ରାୟ, ବେଣୁଧର ସାମଲ, ରସାନନ୍ଦ ଶୁକ୍ଳ, ଡମ୍ବରୁଧର ରାୟ ଓ ଅନାମ ଚରଣ ଦାଶ ପ୍ରମୁଖ ଆଠ ଜଣଙ୍କୁ ପୋଲିସ୍ କାଇପଡ଼ା ଘାଟ ପାଖରୁ ଗିରଫ କଲେ ।

ହାଡ଼ିବନ୍ଧୁ ପଣ୍ଡା ପ୍ରତିଶୋଧ ନିଆଁରେ ଜଳୁଥିଲା । ସେ ମୁହାଁମୁହିଁ ତା' ଠେଙ୍ଗାରେ ଜଣେ ପୋଲିସ୍‌କୁ ପିଟି ପକାଇ ଦେଇ ପଳାଇ ଆସୁଥିବା ବେଳେ ପୋଲିସ୍ ବନ୍ଧୁକର ସଂଗୀନ ମୁନରେ ତା'ର ପ୍ରାଣ ଗଲା । ପୋଲିସ୍ ଅଫିସର ଲକ୍ଷ୍ମଣ ମିଶ୍ରଙ୍କ ଉପରେ ଭୀଷଣ ମାଡ଼ ହେଲା । ପୋଲିସ ଗୁଳିରେ ରସାନନ୍ଦ ରାୟ ଆଘାତ ପ୍ରାପ୍ତ ହେଲେ । ଠିକ୍ ସେତିକି ବେଳେ 'ଗୁଡୁମ୍, ଗୁଡୁମ୍' ଗୁଳି ଚାଲିଲା । ଭୟରେ ଲୋକମାନେ ଛତ୍ରଭଙ୍ଗ ଦେଲେ ।

ହାଟ ସାହିର ମାୟାଧର ଭୂୟାଁ, କୃଷ୍ଣ ନଗରର ହାଡ଼ିବନ୍ଧୁ ପଣ୍ଡା ଓ ସାନନ୍ଦ ସ୍ୱାଇଁ, ଶ୍ରୀରାମପୁରର ସାଉଁଟି ମଲ୍ଲିକ ପୋଲିସ୍ ଗୁଳିରେ ଶହୀଦ ହେଲେ । ରାମ ଜେନା ଓ ଆହୁରି ଅନେକ ଆହତ ଓ ଖଣ୍ଡିଆଖାବରା ହେଲେ । ଶହୀଦ ରକ୍ତରେ କଳାମାଟିଆର କଳାମାଟି ରକ୍ତରଂଜିତ ହୋଇ ଲାଲେ ଲାଲେ ହୋଇଗଲା । କଳାମାଟିଆ ହେଲା-ରକ୍ତତୀର୍ଥ - ଦେଶ ଜାତିର ପୁଣ୍ୟ ପୀଠ । ସେ ଦିନ ଥିଲା ପବିତ୍ର ଗହ୍ମା ପୂର୍ଣ୍ଣିମା । ୧୯୪୨ ମସିହା ଅଗଷ୍ଟ ମାସ ୨୬ ତାରିଖ ଭାରତୀୟ ସ୍ୱାଧୀନତା ସଂଗ୍ରାମ ଇତିହାସରେ ଏକ ଅବିସ୍ମରଣୀୟ ଦିନ । ସେଦିନ ଯେଉଁ ଶହୀଦ୍‌ମାନେ ବରୀମାଟିରେ ମୁକ୍ତି ମଶାଳ ଜାଳି ଦେଲେ ତାହା ଯୁଗ ଯୁଗ ଧରି ଆମକୁ ଆଲୋକ ଦେଖାଇବ । ସେମାନଙ୍କ ଜୀବନାଦର୍ଶ ଆମକୁ ପ୍ରେରଣା ଦେବ । ଏ ଘନାନ୍ଧକାରରେ ଆଗାମୀ ଯୁଗ ପାଇଁ ଦିଗ୍ ଦର୍ଶନ ଦେବ । ସେହି ପବିତ୍ର ଆଶ୍ରମରେ, ସ୍ୱାଧୀନତା ପରେ ଗାନ୍ଧିଜୀଙ୍କ ରଚନାତ୍ମକ କାର୍ଯ୍ୟକୁ ଆଗେଇ ନେଇଥିଲେ ଗୁଜରାଟର ମହିଳା ଶ୍ରୀମତୀ ରମ୍ଭା ଦେବୀ । ଗତ କିଛି ବର୍ଷ ତଳେ ତାଙ୍କର ଦେହାନ୍ତ ହୋଇଛି ।

**ସହାୟକ ଗ୍ରନ୍ଥସୂଚୀ**


୧. ସ୍ୱାଧୀନତା ସଂଗ୍ରାମରେ ଉତ୍କଳୀୟ ନାରୀ - ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାରଣା

୨. Story of Freedom Struggle in Orissa

୩. History of Freedom Movement in Orissa - Vd-II

୪. ଓଡ଼ିଆ ସାହିତ୍ୟର ମୁଖଶାଳା - ଗିରିଧାରୀ ସ୍ୱାଇଁ

୫. ମୁକ୍ତି ସଂଗ୍ରାମର ପୁଣ୍ୟପୀଠ, ଯାଜପୁର - ଗିରିଧାରୀ ସ୍ୱାଇଁ

୬. ଯାଜପୁର - ବିରଜାକ୍ଷେତ୍ର ସଂଘ - ରାଉରକେଲା (ସ୍ମରଣିକା) ଏପ୍ରିଲ - ୧୯୯୯

୭. ମୁକ୍ତି ସଂଗ୍ରାମର ତୀର୍ଥଭୂମି ଯାଜପୁର, ସଂପାଦନା - ଡଃ ବିଜୟ ସାମଲ

୮. India wins Freedom - Abdul Kalam Azad

୯. ଓଡ଼ିଶାର ସ୍ୱାଧୀନତା ସଂଗ୍ରାମର ଏକ ଝଲକ, ଡଃ ଜଗନ୍ନାଥ ପଟ୍ଟନାୟକ (ଉତ୍କଳ ପ୍ରସଙ୍ଗ - ଅଗଷ୍ଟ ୧୯୯୭)

୧୦. କେତେକ ସ୍ୱାଧୀନ ସଂଗ୍ରାମୀଙ୍କ ସାକ୍ଷାତକାର - ବିବରଣୀ (ଲେଖକଙ୍କ ଦ୍ୱାରା)



କୁଆଁସରପୁର
ଦେବୀଦ୍ୱାର, ଯାଜପୁର

# ନିମକ୍ ହାରାମ୍ ଜାଗିର୍ ଓ ଫତେ ମହମ୍ମଦ

ରମେଶ ନନ୍ଦ

୧୮୦୩ ମସିହାରେ ଇଂରେଜ ଜେନେରାଲ ହାର୍‌କୋଟ ଖୋର୍ଦ୍ଧା ଆକ୍ରମଣ କଲେ । ହାର୍‌କୋଟ୍ ମାଡ୍ରାସଠାରୁ ପୁରୀ ଆସିବା ନିମନ୍ତେ ନିଜର ସୈନ୍ୟବାହିନୀ ସହ ସମୁଦ୍ର କୂଳ ବାଟ ଦେଇ ଅଗ୍ରଗତି କରୁଥିଲେ । ଏବେ ବି ମାଡ୍ରାସରେ ଦକ୍ଷିଣ ହାର୍‌କୋଟ୍ ଏବଂ ଉତ୍ତର ହାର୍‌କୋଟ୍ ଦୁଇଟି ଜିଲ୍ଲା ତାଙ୍କର ନାମ ଅନୁସାରେ ରହିଛି । ହାରକୋଟ୍‌ଙ୍କ ଆକ୍ରମଣରେ ସର୍ବଶେଷରେ ୧୮୦୫ ମସିହା ବେଳକୁ ଓଡ଼ିଶା ଇଂରେଜ ଶାସନାଧୀନ ହେଲା । ଜେନେରାଲ ହାରକୋଟ୍ ସମୁଦ୍ର କୂଳ ବାଟରେ ଆସି ମାଲୁଦଠାରେ ପାରିକୁଦରେ ପହଞ୍ଚିଲେ । ଚାରିପଟେ ଚିଲିକା । ପାରିକୁଦ ଗୋଟିଏ ଦ୍ୱୀପାଞ୍ଚଳ । ପାରିକୁଦ ଗଡ଼ଠାରୁ ମାଲୁଦ ୧୦ କିଲୋମିଟର । ପ୍ରଥମେ ପାରିକୁଦ ରାଜ୍ୟଟି ବଙ୍କାଡ଼ ଗଡ଼ ଅଧୀନରେ ଥିଲା । ତାହା ଏବର ବାଣପୁର । ବାଣପୁର ବାଣାସୁରର ରାଜଧାନୀ ବୋଲି ପ୍ରବାଦ ରହିଛି । ବଙ୍କାଡ଼ ଗଡ଼ର ରାଜା ଶ୍ରୀହରି ସେବକ ମାନସିଂହ ଖୋର୍ଦ୍ଧା ରାଜାଙ୍କଦ୍ୱାରା ଆକ୍ରମିତ ହେବାପରେ ପରାସ୍ତ ହୋଇ ପଳାୟନ କଲେ । (ପାରିକୁଦ ଇତିହାସ- ଡାକ୍ତର ରାଧାଚରଣ ପଣ୍ଡା) ୧୭୭୧ ଖ୍ରୀ:ରେ ଶ୍ରୀହରି ସେବକ ମାନସିଂହ ପାରିକୁଦକୁ ଚାଲି ଆସିଲେ ଓ ଗୁରୁବାଇଠାରେ ନିଜର ନୃସିଂହ ଗଡ଼ ପ୍ରତିଷ୍ଠା କଲେ । ପରେ ପରେ ୧୭୯୮ ଖ୍ରୀ:ରେ ତାଙ୍କର ସୁପୁତ୍ର ଭାଗିରଥୀ ମାନସିଂହ ନିଜର ରାଜଧାନୀ ପାରିକୁଦ ଗଡ଼କୁ ଉଠାଇ ଆଣିଲେ । ଗୋଟିଏ ଗଉଡ଼ ଗାଈ ଚରାଉଥିବାବେଳେ ଗୋଟିଏ ବଗ, ଛଞ୍ଚାଣକୁ ମାଡ଼ି ବସିଥିବାର ଦେଖିଲା ଏବଂ ରାଜାଙ୍କୁ ଏ ବିଷୟରେ ଖବର ଦେଲା । ତେଣୁ ରାଜା ଭାଗିରଥୀ ମାନସିଂହ ତାଙ୍କର ନୂତନଗଡ଼ ସେଠାରେ ପ୍ରତିଷ୍ଠା କଲେ । ପୁରସ୍କାର ସ୍ୱରୂପ ସେହି ଗଉଡ଼ର ନାମରେ ଏ ଗଡ଼ର ନାମ କୃଷ୍ଣପ୍ରସାଦ ଗଡ଼ ନାମରେ ନାମିତ ହେଲା ।

ଭାଗିରଥୀ ମାନସିଂହ ୧୭୯୮ ଖ୍ରୀ:ଅ:ରେ ରାଜବାଟି ନିର୍ମାଣ କରିଥିଲେ ଏବଂ ଭାଗିରଥୀପୁର ଶାସନ ନାମରେ ଏକ ବ୍ରାହ୍ମଣ ଶାସନ ପ୍ରତିଷ୍ଠା କରିଥିଲେ ।

ଯେଉଁ ସମୟରେ ଜେନେରାଲ ହାର୍‌କୋଟ୍ ମାଲୁଦ ଅଞ୍ଚଳରେ ସଦଳବଳ ସୈନ୍ୟ ନେଇ ପହଞ୍ଚିଲେ । ସେ ସମୟରେ ମାଲୁଦ ପାଖରେ 'କନ୍ଦାଖାଇ' ନାମରେ ଗଭୀର ଏବଂ ବିପଜ୍ଜନକ ଚିଲିକାର ଗଣ୍ଡ ଥିଲା । ଏହାକୁ ଅତିକ୍ରମ କରିବା ନିମନ୍ତେ ମାଲୁଦ ଅଞ୍ଚଳର ଫତେ ମହମ୍ମଦ ନାମକ ଜଣେ ବ୍ୟକ୍ତି ନିଯୁକ୍ତ ହୋଇଥାନ୍ତି । ଜେନେରାଲ ହାର୍‌କୋଟ୍ ସେ ସମୟରେ ପୁରୀକୁ ରାସ୍ତା ଜାଣି ପାରୁନଥାନ୍ତି ଏବଂ କୌଣସି ବ୍ୟକ୍ତି ତାଙ୍କୁ ଏ ଦିଗରେ ସହାୟତା କରିବାପାଇଁ ଆଗେଇ ଆସୁ ନଥାନ୍ତି । ଫଳରେ ଚିଲିକାର ବିପଦସଂକୁଳ ବକ୍ଷ ପାର ହେବା ଓ ପୁରୀ ପହଞ୍ଚିବା ତାଙ୍କ ପାଇଁ କଠିନ ହୋଇ ପଡ଼ିଥିଲା । ସେହି ସମୟରେ ଫତେ ମହମ୍ମଦ ଜେନେରାଲ ହାର୍‌କୋଟ୍‌ଙ୍କୁ ଚିଲିକା ପାରି କରି ନେବାର ପ୍ରତିଶ୍ରୁତି ଦେଲେ ଓ ପୁରୀକୁ ରାସ୍ତା ଦେଖାଇ ଦେବା ପାଇଁ ରାଜି ହେଲେ । ସେ ଜେନେରାଲ ହାର୍‌କୋଟ୍‌ଙ୍କ ସହିତ ଏକ ସର୍ତ୍ତରେ ରାଜି ହେଲେ । ସେ ହାର୍‌କୋଟ୍‌ଙ୍କୁ ପୁରୀକୁ ରାସ୍ତା ଦେଖାଇ ଦେବେ ଓ ତା'ର ପ୍ରତିବଦଳରେ ସେ ଯେଉଁ ଯେଉଁ ବାଟ ଦେଇ ପୁରୀ ଯିବେ, ସେଇ ସବୁ ଇଲାକା ତାଙ୍କର ହୋଇଯିବ ।

ଜେନେରାଲ ହାର୍‌କୋଟ୍ ତାଙ୍କ ସର୍ତ୍ତରେ ରାଜି ହେଲେ ଏବଂ ସେ ତାଙ୍କ ସୈନ୍ୟଙ୍କୁ ଚିଲିକା ପାରି କରାଇ ଦେଲା ଓ ପୁରୀ ଅଭିମୁଖରେ ଯାତ୍ରା କରାଇଲା । ସେ ବାବଦରେ ଯେଉଁ ମାହାଲ ମୁଲକ ଫତେ ମହମ୍ମଦ ଇଂରେଜ ସରକାରଙ୍କଠାରୁ ପାଇଲେ ତାହା ନିମକ ହାରାମ ଜାଗିରି ନାମରେ ଖାତ । ଏହା ସେ ସମୟରେ ଓଡ଼ିଶା ଗେଜେଟ୍‌ରେ ପ୍ରକାଶ ପାଇଥିଲା ।

ଭୀମଟାଙ୍ଗୀ
ଭୁବନେଶ୍ୱର

■ ■ ■ ■

# ଆଦିବାସୀ ସେବାରେ ସମର୍ପିତ ଜୀବନ, ବିଶ୍ୱନାଥ ଆଞ୍ଚା

ବିଭୂତିଭୂଷଣ ଆଚାର୍ଯ୍ୟ

ବହୁ ଘାତପ୍ରତିଘାତ, ସଂଘାତ ସଂଘର୍ଷ ମଧ୍ୟରେ ଯେ ନିଜ ଜୀବନକୁ ବହୁବର୍ଣ୍ଣା କରି ସଫଳ ହୋଇପାରିଛନ୍ତି, ସେ ଓଡ଼ିଶାରେ 'ଆଞ୍ଚା', 'କୋରାପୁଟ ଗାନ୍ଧୀ' ଭାବେ ଜଣାଶୁଣା । ବାଲିଗୁଡ଼ାର ବିଶ୍ୱନାଥ କହିଲେ ୯୩ ବର୍ଷୀୟ ବିଶ୍ୱନାଥ ପଟ୍ଟନାୟକ ନଜରକୁ ଆସନ୍ତି । ଶିକ୍ଷାଗତ ଯୋଗ୍ୟତା ମାତ୍ର ଅଷ୍ଟମ ଶ୍ରେଣୀ । ଗ୍ରାମ ଦିଗପହଣ୍ଡି ଅନ୍ତର୍ଗତ କୁମରଡ଼ା ଗ୍ରାମ । କିଛିଦିନ ଶିକ୍ଷକତା ମଧ୍ୟ କରିଛନ୍ତି । ଓଡ଼ିଶାର ପୂର୍ବତନ ରାଜ୍ୟପାଳ ବି. ସତ୍ୟନାରାୟଣ ରେଡ୍ଡି, ରାଜ୍ୟସଭା ସାଂସଦ ପ୍ୟାରୀମୋହନ ମହାପାତ୍ର, ଏଡ଼ା କୋଚିନ୍ କେରଳରେ ଥିବା ପ୍ରାଧ୍ୟାପିକା ଡଃ ସୁଜାତା ଆଚାର୍ଯ୍ୟ, ଲୋକସଭା ସାଂସଦ ଗିରିଧର ଗମାଙ୍ଗଙ୍କ ଭଳି ବହୁ ମନୀଷି 'ଆଞ୍ଚା'ଙ୍କ ପ୍ରଶଂସାରେ ଶତଜିହ୍ୱ ହୋଇ ଉଠିଛନ୍ତି । ଓଡ଼ିଶାର ବିଭିନ୍ନ ଦୈନିକ ସମ୍ବାଦପତ୍ର, ପତ୍ରପତ୍ରିକା ତାଙ୍କ ଜୀବନ, କର୍ମକୁଶଳତା ସମ୍ପର୍କରେ ସାକ୍ଷାତକାର, ଫିଚର ପ୍ରସ୍ତୁତ କରିଛନ୍ତି । ପ୍ରିଣ୍ଟ ମିଡ଼ିଆ ସହ ଇଲେକ୍ଟ୍ରୋନିକ୍ ମିଡ଼ିଆ ମଧ୍ୟ ଆଞ୍ଚାଙ୍କୁ ବହୁ ସମୟରେ ଚର୍ଚ୍ଚା ପରିସରକୁ, ସମ୍ବାଦ ଘେରକୁ ନେଇଛନ୍ତି । ଆଜନ୍ମ ବ୍ରହ୍ମଚାରୀ, ନିର୍ଲୋଭ ସନ୍ନ୍ୟାସୀ ହେଲେ ହେଁ ନିଜକୁ ବହୁକୁଟୁମ୍ବୀ ଭାବେ ପରିଚୟ ଦେଇଥାନ୍ତି । ସେ ଅନେକ ଅନାଥଙ୍କ ବାପା ମା' ସବୁକିଛି । ବେସାହାରାଙ୍କୁ ରାହା ଦେଇ ସାହା ହୋଇଛନ୍ତି । ଦିଗହରାଙ୍କୁ ଦିଗ ଦେଖାଇଛନ୍ତି । ଶିଶୁଗୃହ, କନ୍ୟାଶ୍ରମ, ସ୍ୱଳ୍ପକାଳୀନ ମହିଳା ନିବାସ, ଜରା ନିବାସ ନିର୍ମାଣ କରାଇପାରିଛନ୍ତି । ଦୃଷ୍ଟିହୀନ, ବଧିର ପିଲାଙ୍କ ସକାଶେ ଉଚ୍ଚ ବିଦ୍ୟାଳୟ ଖୋଲି ପାରିଛନ୍ତି । ବରୀରୁ କୁଜେନ୍ଦ୍ରି, କୁଜେନ୍ଦ୍ରିରୁ କଳାହାଣ୍ଡି, କଳାହାଣ୍ଡିରୁ କନ୍ଧମାଳ ତାଙ୍କ ଜୀବନ ସରଣୀ ।

ଅବିଭକ୍ତ କନ୍ଧମାଳ-କୋରାପୁଟ-କଳାହାଣ୍ଡି, ଗଞ୍ଜାମ ଜିଲ୍ଲାର ଆଦିବାସୀ ହରିଜନ ଛାତ୍ରଛାତ୍ରୀଙ୍କୁ ମାଗଣା ଶିକ୍ଷା ସଂସ୍କାର ଶିଖାଇ ପାରିଛନ୍ତି ଆଞ୍ଚା । ନାରୀ ଶିକ୍ଷାର ପ୍ରସାର କରାଇପାରିଛନ୍ତି ମଧ୍ୟ । ଗାନ୍ଧୀ ଦର୍ଶନ, ବିନୋବା, ଜୟପ୍ରକାଶଙ୍କ ଆଦର୍ଶରେ ସମସ୍ତ ଅନୁଗାମୀଙ୍କୁ ଅନୁପ୍ରାଣୀତ କରିଛନ୍ତି । ଭୂଦାନ ଆନ୍ଦୋଳନବେଳେ ଭୂମିହୀନମାନଙ୍କୁ ଜମି ଦାନ କରି ସେ 'ଗ୍ରାମଦାନ ସର୍ଦ୍ଦାର' ବନିଛନ୍ତି । ସୂତା କାଟିଛନ୍ତି । ମୌଳିକ ଶିକ୍ଷାର ପ୍ରଚାର ଓ ପ୍ରସାର କରାଇପାରିଛନ୍ତି । ପାଦରେ ଏକା ଏକା ଚାଲି ବହୁପଥ ଅତିକ୍ରମ କରିଛନ୍ତି । ସାହୁକାରଙ୍କ ଶୋଷଣରୁ ନିରୀହ ଆଦିବାସୀଙ୍କୁ ମୁକ୍ତ କରାଇଛନ୍ତି । ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସର ଜଗନ୍ନାଥ ଚରିତ୍ରରେ ତାଙ୍କୁ କେହି କେହି ଦେଖିଛନ୍ତି ।

ନିଜେ ସ୍ୱାଧୀନତା ସଂଗ୍ରାମରେ ଅଂଶଗ୍ରହଣ କରି ଦୁଇ ଥର ତିନିବର୍ଷରୁ ଊର୍ଦ୍ଧ୍ୱ କାଳ ବନ୍ଦୀ ଥିଲେ । ଶହୀଦ ଲକ୍ଷ୍ମଣ ନାଏକଙ୍କ ସହ କୋରାପୁଟ ଜେଲରେ ବନ୍ଦୀ ଜୀବନ ବିତାଇଛନ୍ତି । ଅନିର୍ଦ୍ଦିଷ୍ଟ କାଳ ପାଇଁ ନଜର ବନ୍ଦୀ ମଧ୍ୟ ହୋଇଛନ୍ତି । ନିଜେ ସ୍ୱାଧୀନତା ସଂଗ୍ରାମୀ ଚୟନ କମିଟିରେ ଥାଇ ଭତ୍ତା ନେବାକୁ ସୁପାରିଶ କରିନାହାନ୍ତି । ତାଙ୍କର ପ୍ରିୟ ଭଜନ - 'ଯେଉଁଠାରେ ଖାଲି ଲୁହ ପ୍ରଭୁ ହେ, ସେହିଠାରେ ମୋତେ ନିଅ, ଆଜୀବନ ଯିଏ କାନ୍ଦୁଛି ଖାଲି, ପୋଛିବି, ତା' ଆଖି ଲୁହ ।' ପ୍ରିୟ ପ୍ରାର୍ଥନା- 'ଆମେ କର୍ମର ଉପାସନା କରିବୁ । ଆମେ ଧର୍ମର ଆରାଧନା କରିବୁ । ମଣିଷ ଗଢ଼ା ଏ ପାଚେରୀକୁ ଭାଙ୍ଗିବୁ ।' ତାଙ୍କ ଜୀବନକୁ ନେଇ ଶ୍ରୀ ଅଭୟ ମହାପାତ୍ର 'ଜଙ୍ଗଲ ଭିତରକୁ ରାସ୍ତା' ଲେଖିଛନ୍ତି (ଗତ ଜୁନ୍ ୨୦୦୮ ସଂଖ୍ୟା 'ଉତ୍କଳ ପ୍ରସଙ୍ଗ'ରେ ଶ୍ରୀ ଅଭୟ ମହାପାତ୍ରଙ୍କ ରଚିତ ଆଦିବାସୀ ଅଞ୍ଚଳର ନାରୀ ସଂଗ୍ରାମୀ 'ସାଣ୍ଡି ଶବର' ଲେଖାଟିରୁ ମଧ୍ୟ 'ଆଞ୍ଚା'ଙ୍କ ସଂପର୍କରେ ଜଣାପଡ଼େ) କୋରାପୁଟର ସୁବାସ ଚନ୍ଦ୍ର ମିଶ୍ର 'ଆଞ୍ଚା'ଙ୍କ ଜୀବନୀ ଲେଖି ଓଡ଼ିଶା ସାହିତ୍ୟ ଏକାଡ଼େମୀଦ୍ୱାରା ପୁରସ୍କୃତ ଓ ସମ୍ମାନିତ । ନକ୍ସଲ ସମସ୍ୟା ସମାଧାନରେ ଆଦିବାସୀ ଓକିଲ ଡି. ଭୁବନମୋହନ ପଟ୍ଟନାୟକ ଆଞ୍ଚାଙ୍କ ସାନ୍ନିଧ୍ୟ ଲଭିଛନ୍ତି । ନବରଙ୍ଗପୁରର ସ୍ୱାଧୀନତା ସଂଗ୍ରାମୀ ମହମ୍ମଦ ବାଜୀ ଆଞ୍ଚାଙ୍କ ସହକର୍ମୀ ଓ ସମମର୍ମୀ ।

ଆଦିବାସୀଙ୍କ ଅନ୍ତଃସ୍ୱର 'ବନବାସୀ' ପତ୍ରିକାର ଆଞ୍ଚା ମୁଖ୍ୟ ସମ୍ପାଦକ ଭାବେ କାର୍ଯ୍ୟରତ । ନିରାଡ଼ମ୍ବର ସରଳ ତାଙ୍କ ଜୀବନ । ନିଜ ଗୁରୁ ଗୋପବନ୍ଧୁ ଚୌଧୁରୀଙ୍କ ମୃତ୍ୟୁରେ ସେ ନିଜର ପ୍ରିୟବସ୍ତୁ ଲୁଣ ପରିହାର କରିଛନ୍ତି । ବିନା ଜାତି ଓ ଜାତକରେ ବହୁ ସାମାଜିକ ବିବାହ କରାଇଛନ୍ତି । ଖଦଡ଼, ଖଦୀକୁ ସେ ଜୀବନତମାମ୍ ସାଥୀରେ ଧରି ବାଟ ଚାଲିଛନ୍ତି । ଆଜିବି ଗାନ୍ଧିଜୀଙ୍କ କଥା ପଡ଼ିଲେ ସେ ବହେ ଗପନ୍ତି । ତାଙ୍କ ପାଣ୍ଡିତ୍ୟ ହିମାଳୟ ପରି ଉଚ୍ଚ, ବ୍ୟକ୍ତିତ୍ୱ ଶିଶିର ପରି ନିର୍ମଳ ।

ତାଙ୍କ ଅର୍ଥନୀତି ଅଜବ । ମୂଳଧନ ପାଞ୍ଚହଜାର ଟଙ୍କାରେ ସେ 'ସମାଜ' ପରି ୧୯୭୨ରେ ବାଲିଗୁଡ଼ା (କନ୍ଧମାଳ ଜିଲ୍ଲା)ଠାରେ 'ବନବାସୀ ସେବା ସମିତି' ପ୍ରତିଷ୍ଠା କରାଇଥିଲେ । ଆଜି ଏହାର କାର୍ଯ୍ୟକୁଶଳତା ସୁଦୂର ପ୍ରସାରୀ । କନ୍ଧମାଳ ଜିଲ୍ଲାର ପ୍ରାଚୀନତମ ସ୍ୱେଚ୍ଛାସେବୀ ଅନୁଷ୍ଠାନ ଏହି ସମିତି । ଅନ୍ନପୂର୍ଣ୍ଣା ମହାରଣା, ଶରତ ଗୁରୁଜୀ, ମା' ରମାଦେବୀ, ମାଳତୀ ଚୌଧୁରୀ ଆଦିଙ୍କ ସହ ମିଶି ଓଡ଼ିଶାରେ ପଦଯାତ୍ରା କରିଛନ୍ତି 'ଆଜ୍ଞା' । ଓଡ଼ିଶାର ବହୁ ସମାଜସେବୀ ସଂସ୍ଥା ସହ ସେ ସମ୍ପୃକ୍ତ । ଅନେକଙ୍କ ମୁଖ୍ୟ ଉପଦେଷ୍ଟା ଓ ମାର୍ଗଦର୍ଶକ ମଧ୍ୟ ।

ତାଙ୍କ ଜୀବନ, ଚିନ୍ତାଧାରା ତଥା ବିଚାରାଧାରା ଆଜିର ବସ୍ତୁବାଦୀ ଦୁନିଆରେ ଗବେଷଣାସାପେକ୍ଷ । ନିଜେ ଏମିତି ଚାଲୁ ଚାଲୁ କାହା ଉପରେ ନିର୍ଭରଶୀଳ ନହୋଇ, ବୋଝ ନହୋଇ ମରଣକୁ ବରଣ କରିବାକୁ ପସନ୍ଦ କରନ୍ତି । ଜଙ୍ଗଲର ନିର୍ଜନ ପରିବେଶରେ ହଜିଗଲେ ନିଜ ଜୀବନ ବିଦାୟ ନେଇ ଗଲାପରେ ଅନ୍ୟର କାର୍ଯ୍ୟରେ କିଛି ଆସିବ ବୋଲି ଭାବନ୍ତି । ତାଙ୍କ କଥା ଓ କାମରେ କିଛି ଫରକ ନଥାଏ । ସମାଜସେବା କ୍ଷେତ୍ରରେ ଉଲ୍ଲେଖନୀୟ ଅବଦାନ ସକାଶେ ପ୍ରତିବର୍ଷ ଜଣେ ପୁରୁଷ ଓ ଜଣେ ମହିଳା ରଚନାତ୍ମକ କର୍ମୀଙ୍କୁ ପଚିଶ ହଜାର ଟଙ୍କା ଲେଖାଏଁ ଆଚାର୍ଯ୍ୟ ହରିହର, ଗୋପବନ୍ଧୁ ଚୌଧୁରୀ ସ୍ମାରକ ସମ୍ମାନ, ମା' ରମାଦେବୀ, ମାଳତୀ ଚୌଧୁରୀ ସମ୍ମାନ ପ୍ରଚଳନ କରାଇପାରିଛନ୍ତି । ୨୦୦୩ରୁ ଅଦ୍ୟାବଧି ବାର ଜଣଙ୍କୁ ଦିଆ ସରିଛି । ସେମାନେ ହେଲେ, ଅନ୍ନପୂର୍ଣ୍ଣା ମହାରଣା, ଶରତ ମହାରଣା, ଜୟକୃଷ୍ଣ ମହାନ୍ତି, ଅନ୍ନପୂର୍ଣ୍ଣା ଦାସ, ଡି. ଭୁବନମୋହନ ପଟ୍ଟନାୟକ, ସୁମିତ୍ରା ଚୌଧୁରୀ, ପ୍ରଫୁଲ୍ଲ ଦାସ, ଧୋବେନ୍ଦ୍ରି ମହାପାତ୍ର, ପାର୍ବତୀ ସ୍ୱାଇଁ, ଗୋଲକଚରଣ ପାତ୍ର, ସର୍ବେଶ୍ୱର ନାୟକ ଓ କୃଷ୍ଣା ମହାନ୍ତି ।

ସମାଜରୁ ଛୁଆଁଅଛୁଆଁ ଭେଦଭାବ ଦୂର କରି ଆଦର୍ଶ ସମାଜ ପ୍ରତିଷ୍ଠାରେ ତାଙ୍କ ଭୂମିକା ଅବର୍ଣ୍ଣନୀୟ । ପୁରସ୍କାର, ଯଶ, ସମ୍ମାନଠାରୁ ସେ ବହୁ ଦୂରରେ । ନିଜ ପ୍ରିୟଜନକୁ ସର୍ବଦା ଠାକୁର ରାଜା ଇନ୍ଦ୍ରଦ୍ୟୁମ୍ନଙ୍କ ପରି ଦୂରରେ ରଖି ବ୍ୟବଧାନ ରଖିଛନ୍ତି । ସେ ଯେତେ ଛୋଟ ଅବା ବଡ଼ କାମ ହେଉ ତାହା କରିବାକୁ ଯେତେ କଷ୍ଟ ସ୍ୱୀକାର କରିବାକୁ ହେଲେ ବି ପଛାଇ ନାହାନ୍ତି ସେ । ଉତ୍ତର ପିଢ଼ିର ସେ ଆଦର୍ଶ । ଜାତି, ଧର୍ମ, ବର୍ଣ୍ଣ ନିର୍ବିଶେଷରେ ସବୁ ମଣିଷ ତାଙ୍କ ପାଖରେ ସମାନ ସ୍ନେହ, ପ୍ରେମ, ମମତା ଡୋରିରେ ବନ୍ଧା ପଡ଼ିଯାଆନ୍ତି । ମାନବର ପୂଜା ହିଁ ତାଙ୍କ ପାଇଁ ଦେବତାର ପୂଜା ।

ଏ ଜାତିର ସବୁ ମଣିଷକୁ ସେ ତାଙ୍କର ଶୁଭାଶୀର୍ବାଦ ବିତରି ଯାଆନ୍ତୁ । ପୁଷ୍ପାର୍ଘ୍ୟ ଦେଇ ତାଙ୍କୁ ସମ୍ମାନ ଜଣାଇ ପଦସେବା କରିବାର ସୌଭାଗ୍ୟ ବନବାସୀ, ଜନଜାତିଙ୍କୁ ସବୁଦିନ ମିଳୁ । ସେ ଅଜ୍ଞାନ ଅନ୍ଧକାରକୁ ଆଡ଼େଇ ଜ୍ଞାନର ଆଲୋକ ପ୍ରଦାନ କରି ଗାଁ ଗାଁରେ, ଘରେ ଘରେ ପ୍ରଦୀପ ପ୍ରଜ୍ୱଳନ କରିଥିବାରୁ ଶତକୋଟି ପ୍ରଣାମ, ଜୁହାର ଆଜ୍ଞା, 'ଜୀବେମ ଶରଣଂ ଶତମ୍, ପଶ୍ୟେମ ଶରଣଂ ଶତମ୍ ।' ପ୍ରାଥମିକଠାରୁ ବିଶ୍ୱବିଦ୍ୟାଳୟ ଶିକ୍ଷା ପର୍ଯ୍ୟନ୍ତ ବହୁ ଅନାଥ ଆଦିବାସୀଙ୍କୁ ସେ ଶିକ୍ଷାର ଆଲୋକ ଦେଖାଇ ପାରିଛନ୍ତି । ମେଧାବୃତ୍ତି ବ୍ୟବସ୍ଥା ମଧ୍ୟ କରିଛନ୍ତି ।

ଆଦିବାସୀଙ୍କ ଶିକ୍ଷା କ୍ଷେତ୍ରରେ ସଂସ୍କାର ଆଣି ମାଗଣା ବୈଷୟିକ ଓ ଚିକିତ୍ସା ଶାସ୍ତ୍ର ଶିକ୍ଷା ତଥା ମ୍ୟାନେଜ୍‌ମେଣ୍ଟ ଶିକ୍ଷା ଭଳି ବହୁକାର୍ଯ୍ୟ କରିବା ତାଙ୍କର ସ୍ୱପ୍ନ । ମାନସିକ ଅନଗ୍ରସର ଶିଶୁଙ୍କ ସକାଶେ ବିଦ୍ୟାଳୟ ଖୋଲିବାକୁ ଚାହାନ୍ତି ସେ । ଆଦିବାସୀ ସଂସ୍କୃତି, ଭାଷା, ଲୋକଜୀବନ, ଲୋକ ସାହିତ୍ୟକୁ ନେଇ ଓଡ଼ିଶାରେ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା ନିତାନ୍ତ ଜରୁରୀ - ଏହା ଆଜ୍ଞାଙ୍କ ଅଭିମତ ।

ଓଡ଼ିଶାର ଟାଗୋର ସୋସାଇଟି, ଉତ୍କଳ ଖଦୀ ମଣ୍ଡଳ, ଉତ୍କଳ ନବଜୀବନ ମଣ୍ଡଳ, ଭାରତୀୟ ଆଦମୀ ଜାତି ସେବକ ସଂଘ, ଗାନ୍ଧୀ ସ୍ମାରକ ନିଧି ପରି ବହୁ ସଂସ୍ଥା ସହ ସେ ଜଡ଼ିତ । ଗାନ୍ଧିଜୀଙ୍କ ବେରବୋଇ ସମ୍ମିଳନୀରେ 'ଆଜ୍ଞା' ତାଙ୍କ ପାଖେ ପାଖେ ରହି ସାନ୍ନିଧ ଲଭିଥିଲେ । ନଭେମ୍ବର ୧୧, ୧୯୧୬ରେ ଦିଗପହଣ୍ଡି ଅନ୍ତର୍ଗତ କୁମରଡ଼ାଠାରେ ତାଙ୍କ ଜନ୍ମ । ପିତା ଉପେନ୍ଦ୍ର ଓ ମାତା ଇନ୍ଦୁମତୀ । ତା'ପରେ ଅଷ୍ଟମ ଶ୍ରେଣୀ ଶିକ୍ଷାଲାଭ କରି ଗ୍ରାମ ଚାଟଶାଳୀରେ ଶିକ୍ଷକତା । ପରେ ପୁରୀ ଯାତ୍ରା, ସେଠାରେ ଆଚାର୍ଯ୍ୟ ହରିହର ଦାସଙ୍କ ସାନ୍ନିଧ ଲାଭ ଓ ରଥଯାତ୍ରାରେ ସ୍ୱେଚ୍ଛାସେବୀ ସାଜିଲେ । ସେଠାରୁ ଆହ୍ଲାବାଦ କୁମ୍ଭମେଳା ଗସ୍ତ । ବରୀଠାରେ ଗୋପବନ୍ଧୁ ଚୌଧୁରୀ, ମା' ରମାଦେବୀଙ୍କଦ୍ୱାରା ଅନୁପ୍ରାଣିତ ହୋଇ ମୌଳିକ ଶିକ୍ଷା ତାଲିମ୍ ଓ କୁଜେନ୍ଦ୍ରି (କୋରାପୁଟ) ସାଇ ବିନୋବା ଭାବେଙ୍କ ଭୂଦାନ କାର୍ଯ୍ୟର ତଦାରଖ । ଆଜନ୍ମ ବ୍ରହ୍ମଚାରୀ ବିଶ୍ୱନାଥ ବାଲିଗୁଡ଼ାରେ ୧୯୭୨-୭୩ରେ (ବୁଦ୍ଧ ପୂର୍ଣ୍ଣିମା ଗୋପବନ୍ଧୁ ଚୌଧୁରୀଙ୍କ ଜନ୍ମଦିବସ) ବନବାସୀ ସେବା ସମିତି ଶୁଭ ଦେଲେ । ସାଥୀ ଓ ଡାହାଣ ହାତ ଥିଲେ ସମ୍ପାଦକ ଉତ୍ସବ ଚନ୍ଦ୍ର ଜେନା ।

ସେ ଜଷ୍ଟିସ୍ ରାଜକିଶୋର ଦାସ ସମ୍ମାନ, ଭାରତୀୟ ଆଦ୍‌ମି ଜାତି ସେବକସଂଘର ଶ୍ରେଷ୍ଠ ସ୍ୱେଚ୍ଛାସେବୀ ସମ୍ମାନ, ଶାରଳା ପୁରସ୍କାର ଉପାୟନ, ପ୍ରଦ୍ୟୁମ୍ନ ବଳ ସମ୍ମାନ, ରାଧାନାଥ ସମ୍ମାନ, ଜାତୀୟ ସେବା ଯୋଜନା, ଆଦିବାସୀ ମହାବିଦ୍ୟାଳୟ, ବାଲିଗୁଡ଼ାଦ୍ୱାରା ପ୍ରଦତ୍ତ ପ୍ରତିଭା ସମ୍ମାନ (ଆନ୍ତର୍ଜାତୀୟ ଅହିଂସା ଦିବସରେ), ସର୍ବୋଦୟ ସେବକ ସମ୍ମାନ, ନ୍ୟାୟାବତୀ, ଫୁଲବାଣୀ ସମ୍ମାନ, ହରିଶ୍ଚନ୍ଦ୍ର ବକ୍ସିପାତ୍ର ସ୍ମୃତି ସମ୍ମାନ ମୟୂରଭଞ୍ଜରୁ ବହୁ ସମ୍ମାନ ଲଭି ତା'ର ଅର୍ଥରାଶି ବନବାସୀ ବିକାଶ ଟ୍ରଷ୍ଟକୁ ସମର୍ପି ଦେଇଛନ୍ତି । ସମ୍ପ୍ରତି ସେ ବାଲିଗୁଡ଼ା ବନବାସୀ ସେବା ସମିତିରେ ଅବସ୍ଥାନ କରୁଛନ୍ତି ।

ଅଧ୍ୟାପକ
ଏଚ୍.ଆଇ.ଜି.-୧୩୫, ବୈକୁଣ୍ଠ ନିବାସ
କଳିଙ୍ଗ ବିହାର, ପାତ୍ରପଡ଼ା, ଭୁବନେଶ୍ୱର-୧୯

# ସ୍ୱାଧୀନତା ଆନ୍ଦୋଳନରେ ନୀଳକଣ୍ଠ ଦାସ ଓ ତାଙ୍କ ପରିବାର

ପ୍ରଫେସର ଡାଃ ସିଦ୍ଧାର୍ଥ ଦାସ



ଇତିହାସକୁ ପୋତି ହୁଏନା । ଦୁର୍ଗ ଧୂଳିସାତ୍ କରି ସୁରମ୍ୟ ଅଟ୍ଟାଳିକା ଗଢ଼ିଲେ ବି ସେହି ଧୂଳିମାଟିର ପୂର୍ବ ପରିଚୟ ଖୋଜାଯାଏ । ସେହି ଅଧାଭଙ୍ଗା ପଥର ପାଚେରିରୁ କୋଟିଏ ମଣିଷର ଗୋଟିଏ ସ୍ମୃତି- ଅନୁଭୂତିକୁ ମଧ୍ୟ ପୋଛି ହୁଏନା । ବିଶାଳ ଦୁର୍ଗ ଓ ବିରାଟ ପ୍ରାଚୀର ଆବଦ୍ଧ ସ୍ଥାନରେ ମୁକ୍ତିଚେତା ସଂଗ୍ରାମୀଙ୍କୁ ରଖି ବନ୍ଦୀ ଜୀବନର ସଂଜ୍ଞା ନିର୍ଣ୍ଣୟ କରିବା ଯେମିତି ଭୁଲ୍, ବ୍ରିଟିଶରାଜର ସେମିତି ଏକ ଭୁଲ ସଂଗ୍ରାମୀଙ୍କ ସ୍ୱାଧୀନ ଚେତନାକୁ ସେଠାରେ ଶ୍ୱାସରୁଦ୍ଧ କରିବାର ପ୍ରୟାସ । ବ୍ରିଟିଶରାଜର ଏହି ଧାରଣା ଓ ଆକ୍ରୋଶ ଭିତରେ ସଂଗ୍ରାମ ଶ୍ୱାସରୁଦ୍ଧ ନହୋଇ ବରଂ ଦେଶର ସ୍ୱାଧୀନତା ପାଇଁ ଅମ୍ଳଜାନ ସୃଷ୍ଟି କରିଛି । କୋଟି କୋଟି ଲୋକଙ୍କ ପାଇଁ କଣ୍ଟା ହୋଇଥିବା ବିଦେଶୀକୁ ଶେଷରେ ଜାଗା ଛାଡ଼ିବାକୁ ପଡ଼ିଛି ।

କଟକର ଦରଘା ବଜାରରେ ରହିଛି ଏମିତି ଏକ ଐତିହାସିକ ସ୍ଥାନ କଟକ କେନ୍ଦ୍ରୀୟ କାରାଗାର । ଏହାସବୁ ସ୍ୱାଧୀନତା ସଂଗ୍ରାମୀଙ୍କ ପାଇଁ ଏକ ଜାତୀୟ ସ୍ମୃତି-ତୀର୍ଥ, ଏକ ସ୍ମାରକୀ । ଅସଂଖ୍ୟ ସ୍ୱାଧୀନତା ସଂଗ୍ରାମୀ, ବହୁ ବିଦ୍ୱାନ ଦେଶଭକ୍ତ ଓ ରାଜନୈତିକ ମାର୍ତ୍ତଣ୍ଡଙ୍କ ଏହା ଥିଲା କାରାବାସ । ଆଣ୍ଡାମାନର ସେଲୁଲାର ଜେଲ୍ ଭଳି କଟକର ଏହି ଦୁର୍ଗ ଭିତରେ ମୁକ୍ତି ସଂଗ୍ରାମୀଙ୍କ ଆନ୍ଦୋଳନକୁ ବ୍ରିଟିଶମାନେ ଖତମ କରିଦେବାକୁ ଚାହିଁଥିଲେ । କିନ୍ତୁ ଏହା ସମ୍ଭବ ହେଲା କି ? କଟକ କାରାଗାରଟି ଭାରତୀୟ ସ୍ୱାଧୀନତା ଆନ୍ଦୋଳନର ଏକ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ କହିଲେ ବି ଭୁଲ୍ ହେବ ନାହିଁ ।

କଟକ ଜେଲ ପାଖରେ ରହୁଥିବା ଏହି ଲେଖକ ତା' ବାଲ୍ୟକାଳର ସ୍ମୃତିକୁ ମନେ ପକାଇଥାଏ । ସ୍ୱାଧୀନତା ଭାରତର ଏହି ସ୍ମାରକୀକୁ ସେ ସାରା ଜୀବନ ଅତି ନିକଟରୁ ଦେଖିବାର ସୁଯୋଗ ପାଇଛି । ସକାଳେ ସ୍କୁଲ ଗଲାବେଳେ କିମ୍ବା ସନ୍ଧ୍ୟାରେ ଖେଳିସାରି ଘରକୁ ଫେରିବା ବେଳେ ସେ ବିଗୁଲ ଶବ୍ଦ ଶୁଣେ ଓ ଓ୍ୱାର୍ଡ଼ରଙ୍କ ମାର୍ଚ୍ଚପାଷ୍ଟ ଦେଖେ । ଜେଲ ଭ୍ୟାନରେ ନେତା ଓ ସମର୍ଥକଙ୍କୁ କାରାଗାରକୁ ନିଆଯାଉଥିବା, ବାହାରେ ସ୍ଲୋଗାନ ଚାଲିଥିବା, ସେମାନଙ୍କୁ ଛାଡ଼ି ଦେବା ପାଇଁ ବହୁ ବିଶିଷ୍ଟ ବ୍ୟକ୍ତିଙ୍କ ଆନ୍ଦୋଳନ ଓ ଶୋଭାଯାତ୍ରା ଚାଲିଥିବା ଇତ୍ୟାଦି ସେ ଦେଖିଛି । ପିତାମହ ପଣ୍ଡିତ ନୀଳକଣ୍ଠ ଦାସ, ଜେଜେମା ରାଧାମଣି ଦେବୀ, କକା ଅଶୋକ ଦାସ ଓ ପିତା ବିକ୍ରମ ଦାସଙ୍କ ଭଳି ସ୍ୱାଧୀନତା ସଂଗ୍ରାମୀ ପରିବାରରେ ଜନ୍ମ ହୋଇ ସେମାନଙ୍କର ଦେଶ ପାଇଁ ଶ୍ରମଦାନ, ସାମ୍ରାଜ୍ୟ ବିରୋଧରେ ସେମାନଙ୍କ ମନସ୍ତାତ୍ତ୍ୱିକ, ବୌଦ୍ଧିକ ବୈପ୍ଳବିକ ଓ ସାହସିକ କାର୍ଯ୍ୟାବଳୀକୁ ସେ ଭୁଲି ପାରି ନାହିଁ ।

ଭାରତୀୟ ରାଜନୀତିର ଜଣେ ଉତ୍ତୁଙ୍ଗ ବ୍ୟକ୍ତିତ୍ୱ ପଣ୍ଡିତ ନୀଳକଣ୍ଠ ଦାସ । ଭାରତୀୟ ସ୍ୱାଧୀନତାର ମହାସ୍ରୋତରେ ତାଙ୍କର ସାରା ଜୀବନ ସମର୍ପିତ । ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ୧୯୨୧ ମସିହାରେ ଭାରତର ମୁକ୍ତି ଆନ୍ଦୋଳନରେ ସେ ଯୋଗ ଦେଇଥିଲେ । ପାଣ୍ଡିତ୍ୟ ଓ ରାଜନୈତିକ ସଫଳତା ପାଇଁ ତାଙ୍କର ସମସାମୟିକଙ୍କ ଦୃଷ୍ଟିରେ ମହାନ ସମ୍ମାନୀୟ ବ୍ୟକ୍ତିତ୍ୱ ଥିଲେ । ପଣ୍ଡିତ ଗୋପବନ୍ଧୁ ଦାସଙ୍କ ପରେ ସତ୍ୟବାଦୀ ବନବିଦ୍ୟାଳୟକୁ ଆଉ ଯଦି କେହି ସାରା ଭାରତରେ ଏହାର ଖ୍ୟାତିକୁ ପରିବ୍ୟାପ୍ତ କରିଥାନ୍ତି, ସେ ହିଁ ପଣ୍ଡିତ ନୀଳକଣ୍ଠ । ସାର୍ ଦେବପ୍ରସାଦ ସର୍ବାଧିକାରୀ, ସାର୍ ଆଶୁତୋଷ ମୁଖାର୍ଜୀ, ସାର୍ କୃଷ୍ଣ ଗୋବିନ୍ଦ ଗୁପ୍ତା, ସାର୍ ଏଡ଼ୱାର୍ଡ଼ ଗେଟଙ୍କ ଭଳି ବହୁ ସ୍ୱନାମଧନ୍ୟ ବ୍ୟକ୍ତିବିଶେଷ ଏପରିକି ନିଜେ ମହାତ୍ମା ଗାନ୍ଧୀ ନୀଳକଣ୍ଠ ଓ ସତ୍ୟବାଦୀ ବନବିଦ୍ୟାଳୟର ପ୍ରଶଂସା କରିଥିଲେ । ୧୯୦୯ ମସିହାରେ କଲିକତା ବିଶ୍ୱବିଦ୍ୟାଳୟରୁ ଏମ୍.ଏ. ପାସ୍ କଲାପରେ ବ୍ରିଟିଶ ସରକାରଙ୍କ କୌଣସି ସଂସ୍ଥାରେ ବି ସେ ଚାକିରି କରିବାକୁ ମନା କରିଦେଇଥିଲେ । ୧୯୨୦ ମସିହା ପର୍ଯ୍ୟନ୍ତ ନ୍ୟାସନାଲ ସ୍କୁଲର ମୁଖ୍ୟ ଭାବେ ସେ ୯ ବର୍ଷ ଦାୟିତ୍ୱ ତୁଲାଇଥିଲେ । ସେଠାରେ ସେ ଉଚ୍ଚମାନର ଶିକ୍ଷା ସହ ସାମାଜିକ ସଂସ୍କାର ପ୍ରବର୍ତ୍ତନ କରାଇଥିଲେ ।

**ପଣ୍ଡିତଜୀଙ୍କ ପ୍ରଚଣ୍ଡ ପ୍ରତିଭାରେ ଆକର୍ଷିତ ହୋଇ ସାର୍ ଆଶୁତୋଷ ମୁଖାର୍ଜୀ ୧୯୨୦ ମସିହାରେ ତାଙ୍କୁ କଲିକତା ବିଶ୍ୱବିଦ୍ୟାଳୟର ପ୍ରଫେସର ପଦ ପାଇଁ ଆମନ୍ତ୍ରଣ କଲେ ।** ସେଠାରେ ସେ ସ୍ନାତକୋତ୍ତର ଆଧୁନିକ ଭାରତୀୟ ଭାଷା ବିଭାଗର ପ୍ରଫେସର

ନିଯୁକ୍ତ ହେଲେ । ଅସହଯୋଗ ଆନ୍ଦୋଳନର ଡାକରାରେ ସେ ଅସ୍ଥିର ହୋଇ ପଡ଼ିଲେ । ୧୯୨୧ରେ ସେ ଏହି ଆନ୍ଦୋଳନରେ ସାମିଲ ହେଲେ । ୧୯୨୩ ମସିହା ଶେଷ ଭାଗରେ ସେ ଓଡ଼ିଶାରୁ କେନ୍ଦ୍ରୀୟ ବିଧାନସଭାକୁ ନିର୍ବାଚିତ ହେଲେ । ଏକାଧିକ ଥର ସେ ଦିଲ୍ଲୀ ବିଶ୍ୱବିଦ୍ୟାଳୟ ନ୍ୟାୟାଳୟକୁ ନିର୍ବାଚିତ ହୋଇ ୧୯୩୦ ମସିହା ପର୍ଯ୍ୟନ୍ତ ସେଠାରେ କାର୍ଯ୍ୟ କରିଥିଲେ । ୧୯୩୦ରେ ତାଙ୍କୁ ବନ୍ଦୀ କରାଯାଇ ହଜାରିବାଗ୍ ଜେଲ ପଠାଯାଇଥିଲା । ଏହାପରଠାରୁ ସ୍ୱାଧୀନତା ଆନ୍ଦୋଳନରେ ତାଙ୍କର ସକ୍ରିୟ ସମ୍ପୃକ୍ତି ବଢ଼ି ଚାଲିଲା, ବାରମ୍ବାର ରାଜନୈତିକ ବନ୍ଦୀ ଭାବେ ତାଙ୍କୁ କାରାକକ୍ଷରେ ରହିବାକୁ ପଡ଼ିଲା । ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ମୁଖ୍ୟ ଭାବେ ସେ ଓଡ଼ିଶାକୁ ଆଗେଇ ନେଲେ । **୧୯୨୮ ମସିହା ଫେବୃଆରୀ ୮ ତାରିଖରେ ଓଡ଼ିଶା ପ୍ରଦେଶ ଗଠନ ପାଇଁ ଦିଲ୍ଲୀର ସେଣ୍ଟ୍ରାଲ ଆସେମ୍ବ୍ଲିରେ ସେ ଦାବି ଉପସ୍ଥାପନ କଲେ, ଯାହାର ଫଳସ୍ୱରୂପ ୧୯୩୬ ମସିହାରେ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେଲା ।**

ଅସହଯୋଗ ଆନ୍ଦୋଳନ କାଳ (୧୯୨୨-୧୯୩୪)ରେ ସେ ପାଞ୍ଚଥର ଜେଲ ଭୋଗିଛନ୍ତି । ପ୍ରଥମ କାରାବାସ ପରେ ସେ ଦେଶବନ୍ଧୁ ଚିତ୍ତରଞ୍ଜନ ଦାସଙ୍କ ସ୍ୱରାଜ ପାର୍ଟିରେ ଯୋଗ ଦେଇଥିଲେ । ୧୯୨୭ ମସିହାରେ ସେ କଂଗ୍ରେସର ଜଣେ ଏମ୍.ଏଲ୍.ଏ. ଭାବେ ନିର୍ବାଚିତ ହେଲେ ଏବଂ ଲାହୋର କଂଗ୍ରେସ ନିର୍ଦ୍ଦେଶରେ ୧୯୩୦ରେ ତାଙ୍କୁ ଏହି ପଦବୀ ଛାଡ଼ିବାକୁ ପଡ଼ିଥିଲା । ସେହି ବର୍ଷ ସେ ମଦନ ମୋହନ ମାଲବ୍ୟଙ୍କ 'ସ୍ୱାଧୀନ ଦଳ'ରେ ଯୋଗଦେଲେ ଏବଂ ନିର୍ବାଚିତ ହେଲେ । ମହାତ୍ମା ଗାନ୍ଧୀଙ୍କ ଦାଣ୍ଡିଯାତ୍ରା ଡାକରାରେ ସେହିବର୍ଷ ସ୍ୱାଧୀନ ଦଳରୁ ଇସ୍ତଫା ଦେଇ ମଦନ ମୋହନ ମାଲବ୍ୟ, ବିଠଲଭାଇ ପଟେଲ, ଟି. ପ୍ରକାଶମ୍ ଓ ଅନ୍ୟମାନଙ୍କ ସହ ଲବଣ ସତ୍ୟାଗ୍ରହରେ ସାମିଲ ହେଲେ ।

**୧୯୩୯ରେ ସୁଭାଷ ଚନ୍ଦ୍ର ବୋଷ ଓଡ଼ିଶା ଆସିବା ବେଳକୁ ପଣ୍ଡିତଜୀ ଉତ୍କଳ ପ୍ରଦେଶ କଂଗ୍ରେସର ସଭାପତି ଥାଆନ୍ତି, ସୁଭାଷଙ୍କ ସହ ସେ ସାରା ଓଡ଼ିଶା ବୁଲିଲେ ।** ସେ ସୁଭାଷଙ୍କ ଚିନ୍ତନକୁ ହୃଦୟଙ୍ଗମ କଲେ । ବ୍ରିଟିଶରାଜର ରଣକୌଶଳ ଓ କଂଗ୍ରେସର ନରମ ମନୋଭାବରୁ ନେତାଜୀ ବୁଝିଥିଲେ ଯେ ଦେଶ ବିଭାଜନ ହେବ ଏବଂ ଗୋଟିଏ ପଟରେ ହିନ୍ଦୁ ଓ ଅନ୍ୟପଟରେ ମୁସଲମାନ ରହିବେ । ସେ ନେତାଜୀଙ୍କ ଚିନ୍ତାଧାରା ଗ୍ରହଣ କଲେ । ପାରଳାଖେମୁଣ୍ଡି ମହାରାଜା ଓ ଓଡ଼ିଶାର ମୁସଲିମ୍ ଲିଗ୍‌କୁ ନେଇ ଖୁବ୍ ଶୀଘ୍ର ଏକ ମିଳିତ ସରକାର ଶପଥ ନେଇଥିଲା । ଅବଶ୍ୟ ସେହି ମନ୍ତ୍ରିମଣ୍ଡଳରେ କୌଣସି ବିଭାଗରେ ନୀଳକଣ୍ଠଙ୍କ ସଂପୃକ୍ତି ନଥିଲା, ଜୀବନ ସାରା ସେ ସ୍ୱାଧୀନତା ପାଇଁ ସଂଗ୍ରାମ କରିଥିଲେ । ଜୀବନର ଶେଷ ଭାଗରେ ସତ୍ୟବାଦୀ ବିଧାନସଭା ନିର୍ବାଚନମଣ୍ଡଳୀରୁ ଅପ୍ରତିଦ୍ୱନ୍ଦ୍ୱୀ ବିଧାୟକ ଭାବେ ନିର୍ବାଚିତ ହୋଇଥିଲେ ଏବଂ ପରେ ଓଡ଼ିଶା ବିଧାନସଭାର ବାଚସ୍ପତି ଭାବେ ମଧ୍ୟ ନିର୍ବାଚିତ ହେଲେ ।

ଆଜି ଓଡ଼ିଶାରେ ଯେଉଁ ସ୍ୱାଧୀନ ବ୍ୟବସ୍ଥାପକ ସଭା ରହିଛି ତାହା ନୀଳକଣ୍ଠଙ୍କ ଅବଦାନରୁ ହିଁ ସମ୍ଭବ ହୋଇଛି । ଜଣେ ସାମ୍ବାଦିକ, ସମୀକ୍ଷକ ଓ ସମ୍ପାଦକ ଭାବେ ତାଙ୍କର ଯଥେଷ୍ଟ ଖ୍ୟାତି ଥିଲା । ତାଙ୍କ ସମ୍ପାଦନାରେ ଆଠ ବର୍ଷ ଧରି ଓଡ଼ିଆର ସର୍ବାଧିକ ଜନପ୍ରିୟ ସାହିତ୍ୟ ଓ ସଂସ୍କୃତି ପତ୍ରିକା 'ନବଭାରତ' ପ୍ରକାଶ ପାଇଥିଲା । ଓଡ଼ିଆ ଭାଷା-ସାହିତ୍ୟର ମହାନ ସାହିତ୍ୟିକ ପ୍ରଚଣ୍ଡ ପ୍ରତିଭାଧାରୀ ନୀଳକଣ୍ଠ ବହୁ ପୁସ୍ତକର ସ୍ରଷ୍ଟା । ତାଙ୍କର କବିତା, ପ୍ରବନ୍ଧ, ସମାଲୋଚନା, ଗବେଷଣାତ୍ମକ ଲେଖା ଓଡ଼ିଆ ଭାଷା ଓ ସଂସ୍କୃତିକୁ ସମୃଦ୍ଧ ଓ ଋଦ୍ଧିମନ୍ତ କରିଛି । ଚାରିଟି ବୃହତ୍ ଖଣ୍ଡରେ ସଂକଳିତ 'ନୀଳକଣ୍ଠ ଗ୍ରନ୍ଥାବଳୀ' ଓଡ଼ିଆ ସାହିତ୍ୟର ଦୁର୍ଲଭ କୃତି । ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ ପାଇଁ ତାଙ୍କର ନିରନ୍ତର ଉଦ୍ୟମ ଥିଲା । ୧୯୩୮ରେ ରାଜ୍ୟ ସରକାର ତାଙ୍କୁ ଉତ୍କଳ ବିଶ୍ୱବିଦ୍ୟାଳୟ ସ୍ଥାପନ କମିଟିର ଅଧକ୍ଷ ଭାବେ ନିଯୁକ୍ତି ଦେଇଥିଲେ ଏବଂ ତାଙ୍କ ରିପୋର୍ଟକୁ ଭିତ୍ତିକରି ବିଶ୍ୱବିଦ୍ୟାଳୟ ସ୍ଥାପନ ସ୍ୱପ୍ନ ସଫଳ ହୋଇଥିଲା । ତାଙ୍କୁ ଡିଲିଟ୍ ମିଳିଥିଲା ଏବଂ ସେ ମଧ୍ୟ 'ପ୍ରୋ ଚାନସେଲର' ଥିଲେ । **ଓଡ଼ିଶାରୁ ପ୍ରଥମ ଥର ପାଇଁ ଭାରତ ସରକାର ତାଙ୍କୁ 'ପଦ୍ମଭୂଷଣ'ରେ ସମ୍ମାନିତ କରିଥିଲେ । ଜଣେ ବିଶିଷ୍ଟ ସଂଗ୍ରାମୀ, ଚିନ୍ତାନାୟକ, ସଂସ୍କାରକ, ଶିକ୍ଷାବିତ୍, ସାହିତ୍ୟିକ, ବିଚକ୍ଷଣ ପଣ୍ଡିତ ନିଜ ପରିବାରର ମୁଖ୍ୟ ଭାବେ ନୀଳକଣ୍ଠ ଜାତୀୟ ଚେତନାର ଧାରାରେ ତାଙ୍କ ପରିବାରକୁ ଉଦ୍‌ବୁଦ୍ଧ କରିଥିଲେ । ତ୍ୟାଗ, ଜନସେବା ଓ ସମାଜ କଲ୍ୟାଣର ମୂର୍ତ୍ତିମନ୍ତ ପ୍ରତୀକ ଭାବେ ସେ ସେତେବେଳେ ସହବନ୍ଦୀଙ୍କ ନିକଟରେ ପୂଜ୍ୟ ଥିଲେ ।**

ନୀଳକଣ୍ଠଙ୍କ ଭଳି ଯଦିଓ ପତ୍ନୀ ରାଧାମଣିଙ୍କର ଶିକ୍ଷାଗତ ଯୋଗ୍ୟତା ନଥିଲା, ତଥାପି ମୁକ୍ତି ସଂଗ୍ରାମରେ ସ୍ୱାମୀଙ୍କୁ ସେ ନିରବଚ୍ଛିନ୍ନ ସହଯୋଗ କରୁଥିଲେ । ନୀଳକଣ୍ଠ ଗିରଫ ହେଲେ କିମ୍ବା ଜେଲ ଗଲେ ପିଲାମାନଙ୍କ ଚିକିତ୍ସା, ସେବାରେ ଅଭାବ ହେଉଥିଲା । ଦୁଇ ଝିଅ ବାସନ୍ତୀ ଓ ଭାରତୀଙ୍କର ଚିକିତ୍ସା ଅଭାବରୁ ମୃତ୍ୟୁ ହୋଇଥିବାରୁ ପରିବାର ଦୁଃଖରେ ଭାଙ୍ଗି ପଡ଼ିଥିଲା । ମା' ମନ, ନ ହେବ ବା କେମିତି ? ତଥାପି ଦେଶ ପାଇଁ ଏ ସବୁ ଦୁଃଖ ରାଧାମଣି ପାଶୋରି ପକାଇଥିଲେ । ଭାରତଛାଡ଼ ଆନ୍ଦୋଳନରେ ସେ ସକ୍ରିୟ ଅଂଶ ଗ୍ରହଣ କରିଥିଲେ ଏବଂ ଗିରଫ ହୋଇ ପୁରୀ ଜେଲରେ ବନ୍ଦୀ ଜୀବନ କଟାଇଥିଲେ । ଜଣେ ଜ୍ୱାଳାମୁଖୀ ମୁକ୍ତି ସଂଗ୍ରାମୀର ପତ୍ନୀଭାବେ ସେ ବିପ୍ଳବିନୀ ସାଜିଥିଲେ । ବିପ୍ଳବ ବିରୋଧୀ ନୀତିରେ ସେ ସାଲିସ କରି ନଥିଲେ । ଆଜୀବନ ସେ ଖଦି ପିନ୍ଧୁଥିଲେ, କେବେ ବି ସୁନା ଗହଣା ପିନ୍ଧୁ ନଥିଲେ । ନୀଳକଣ୍ଠ ଦିଲ୍ଲୀ କିମ୍ବା ଭାରତର ଅନ୍ୟ କୌଣସି ସ୍ଥାନ ଏପରିକି ବାରମ୍ବାର ଜେଲ ଗଲେ ରାଧାମଣିଙ୍କୁ ପାଞ୍ଚଟି ପିଲାର ଦାୟିତ୍ୱ ତୁଲାଇ ସଂସ୍କାରକୁ ପ୍ରତିପାଳନ କରିବାକୁ ପଡୁଥିଲା । ଜଣେ ସଚ୍ଚା ରାଷ୍ଟ୍ରବାଦୀର ଚିନ୍ତାଧାରାରେ ସେ ଏସବୁ କରିପାରୁଥିଲେ । ପଣ୍ଡିତଜୀଙ୍କ ସୁଖ ଦୁଃଖରେ ସେ ଥିଲେ ସମଭାଗୀ, ସମଦର୍ଶୀ ଓ ସମର୍ଥକ ।

ନୀଳକଣ୍ଠଙ୍କ ପୁତ୍ର ବିଶିଷ୍ଟ ବିଦ୍ୱାନ, ସମାଜ ସଂସ୍କାରକ ଓ ଦେଶ ଭକ୍ତ ଥିଲେ ଅଶୋକ ଦାସ । ଛାତ୍ର ଜୀବନର ସ୍ୱାଧୀନତାରୁ ସ୍ୱପ୍ନ

ଦେଖୁଥିଲେ ଏବଂ ତ୍ୟାଗ କ'ଣ ଜାଣିଥିଲେ । ୧୯୩୦ ମସିହାରେ ରେଭେନ୍ସା କଲିଜିଏଟ୍ ସ୍କୁଲର ଏକ ପ୍ୟାରେଡ଼ରେ ଜଣେ ସ୍କାଉଟ୍ ଭାବେ ନେତୃତ୍ୱ ନେଉଥିବା ଅଶୋକ ଦାସ ନିମନ୍ତ୍ରିତ ବ୍ରିଟିଶ ଅଧିକାରୀ ଓ ଅତିଥିଙ୍କ ସହ ସର୍ବସମ୍ମୁଖରେ ପତାକା ଦଣ୍ଡରୁ 'ୟୁନିୟନ ଜାକ୍'କୁ ଖସାଇ ଦେଇ ସେଠାରେ ଜାତୀୟ ପତାକା ଉତ୍ତୋଳନ କରିଥିଲେ । ତାଙ୍କୁ ସଂଗେସଂଗେ ଗିରଫ କରାଯାଇ ସେଠାରୁ ହଜାରିବାଗ ଜେଲ ପଠାଯାଇଥିଲା । ପଣ୍ଡିତଜୀଙ୍କ ସହ ସେଠାରେ ସେ ସହବନ୍ଦୀ ଭାବେ ରହିଥିଲେ । ଜଣେ ସଶକ୍ତ ବିପ୍ଳବୀ ହେବାର ନିରନ୍ତର ଉଦ୍ୟମ ତାଙ୍କ ଶିକ୍ଷାରେ ପ୍ରତିବନ୍ଧକ ସାଜିଥିଲା, ତଥାପି ସେ ପଛକୁ ଫେରି ନଥିଲେ । ସେ ଜାତୀୟତାର ଗଭୀର ପ୍ରବାହରୁ ଚାଲି ଯାଇଥିଲେ ଏବଂ ଅଗ୍ରଣୀ ଥିଲେ ।


ଜ୍ୟେଷ୍ଠ ପୁତ୍ର ଅଶୋକ ଦାସ


କନିଷ୍ଠ ପୁତ୍ର ବିକ୍ରମ ଦାସ

୧୯୩୯ ମସିହାରେ କଂଗ୍ରେସ ବିଭାଜନ ପରେ ସେ ନେତାଜୀ ସୁଭାଷ ଚନ୍ଦ୍ର ବୋଷଙ୍କର ଜଣେ ଦୃଢ଼ ସମର୍ଥକ ଥିଲେ ଏବଂ ଫରୱାର୍ଡ଼ ବ୍ଳକ୍‌ର ଜଣେ ସଦସ୍ୟ ହେଲେ । ବ୍ରିଟିଶରାଜଦ୍ୱାରା ଆତଙ୍କବାଦୀ ରୂପେ ବିବେଚିତ ହେଉଥିବାରୁ ଯଦିଓ ବହୁ ସମୟ ତାଙ୍କୁ ଆତ୍ମଗୋପନ କରିବାକୁ ପଡ଼ିଥିଲା, ତଥାପି ସ୍ୱାଧୀନତା ପାଇଁ ସେ ସଂଗ୍ରାମ ଅବ୍ୟାହତ ରଖିଥିଲେ । ମୁକ୍ତି ଆନ୍ଦୋଳନରେ ଝାସ ଦେଇ ଛାତ୍ରଜୀବନକୁ ଖିନ୍‌ଭିନ କରିଥିବା ଅଶୋକ ୧୯୪୨ ମସିହାରେ ଆଇନ ଅଧ୍ୟୟନ ଶେଷ କଲେ । ପୁଣି ତାଙ୍କୁ ଗିରଫ କରାଗଲା, କାରାଗାରରେ ରଖାଗଲା । କାରଣ ବ୍ରିଟିଶ ଶାସନକୁ ପରାହତ କରିବାକୁ ସେ ସକ୍ରିୟ ସଂପୃକ୍ତ ଥିଲେ । ଏ ପରିପ୍ରେକ୍ଷୀରେ ତାଙ୍କର ଆଇନ ବ୍ୟବସାୟରେ କିଛି ବର୍ଷ ବିଳମ୍ବ ହେଲା । ୧୯୪୬ ମସିହାରେ ସେ ବାର୍‌ରେ ଯୋଗଦେଲେ ଏବଂ ଆଇନ ବୃତ୍ତି ଆରମ୍ଭ କଲେ । ସେ ମିଷ୍ଟଭାଷୀ ଥିଲେ କିନ୍ତୁ ଅନ୍ୟାୟ ସହ ସାଲିସ୍ କରିବା କିମ୍ବା କର୍ତ୍ତୃପକ୍ଷଙ୍କ ପାଖରେ ଅନ୍ୟାୟରେ ମୁଣ୍ଡ ନୁଆଁଇବାର ମଣିଷ ନଥିଲେ । ଦମନ ପୀଡ଼ନକୁ ପ୍ରତିରୋଧ ପ୍ରତିହତ କରିବାର ଅସାଧାରଣ ବ୍ୟକ୍ତି ସେ ଥିଲେ । ଅନ୍ୟାୟ ଓ ଶୋଷଣ ବିରୋଧରେ ସ୍ୱର ଉତ୍ତୋଳନ ନକରି ପଛଘୁଞ୍ଚା ଦେବା କିମ୍ବା ଚୁପ୍ ରହିଯିବାର ପ୍ରବୃତ୍ତି ତାଙ୍କ ରକ୍ତରେ ନଥିଲା । ରାଜ୍ୟସ୍ତରୀୟ ଛାତ୍ର ଆନ୍ଦୋଳନକୁ ପ୍ରୋତ୍ସାହିତ ଓ ପ୍ରେରଣା ଯୋଗାଉଥିବା ଅଭିଯୋଗରେ ୫୨ ବର୍ଷ ବୟସର ଅଗ୍ରଣୀ ଆଇନଜ୍ଞ ଅଶୋକ ଦାସ ପୁଣି ୧୯୪୬ରେ ଗିରଫ ହେଲେ । କଟକ କେନ୍ଦ୍ରୀୟ କାରାଗାରରେ ସେ ବନ୍ଦୀ ଜୀବନ କଟାଇଲେ ।

ସେହି ସମୟରେ ତାଙ୍କ ପୁତୁରା ଏହି ଲେଖକ ନିଜ ପରିଚୟ ଗୋପନ ରଖି ଜେଲର ତତ୍କାଳୀନ ଡାକ୍ତରଙ୍କ ବନ୍ଧୁ ଭାବେ ପରିଚୟ ଦେଇ ଜେଲ ଭିତରକୁ ଯିବାର ସୁଯୋଗ ପାଇଥିଲା । ସେଦିନର ସ୍ମୃତି ମନେ ପଡ଼େ 'ମୋଟା ଓ ଶକ୍ତ ଲୁହାଛଡ଼ ଆବଦ୍ଧ କାରାକକ୍ଷ । ତା' ଭିତରେ ବସିଥାନ୍ତି କକା (ଅଶୋକ ଦାସ) ଓ ଅମିତାଭ ମହାପାତ୍ର । ସେମାନଙ୍କ ଆଡ଼କୁ ଦୌଡ଼ୁଥିବାର ଦେଖି ସେମାନେ ଆନନ୍ଦ ବିଭୋର ହୋଇ ପଡ଼ିଥିଲେ । ସେ ମୁହୂର୍ତ୍ତଟିକୁ କେବେ ମୁଁ ଭୁଲି ପାରିନାହିଁ । ଆଜି ସେହି କାରାଗାର ଏକାକୀ ଏକ ଜାତୀୟ ସ୍ମାରକୀ ପାଲଟି ଯାଇଛି ।'

ଅଶୋକ ଦାସ ଥିଲେ ପ୍ରଖର ପ୍ରଜ୍ଞାଧାରୀ ଓକିଲ, ଫୌଜଦାରୀ ଓ ସାମ୍ବିଧାନିକ ମାମଲାର ଜଣେ ଆଇନ ବିଶେଷଜ୍ଞ ଏବଂ ଓଡ଼ିଶାର ଆଡ଼ଭୋକେଟ୍ ଜେନେରାଲ । ଆଇନ ବିଭାଗରୁ ଏ.ଜି. ଅଫିସକୁ ସଂପୂର୍ଣ୍ଣ ଅଲଗାକରି ଏ.ଜି.କୁ ଜଣେ କ୍ୟାବିନେଟ ମନ୍ତ୍ରୀର ମର୍ଯ୍ୟାଦା ଦେବାରେ ସେ ସକ୍ଷମ ହୋଇଥିଲେ । ଜୀବନରେ ସବୁ କ୍ଷେତ୍ରରେ ତାଙ୍କୁ ଜଣେ ସଂସ୍କାରକ କୁହାଯିବ । ଆଇନ ବ୍ୟତୀତ ଶିକ୍ଷାର ଅଗ୍ରଗତି ପାଇଁ ସେ ମନ ବଳାଇଥିଲେ । ବହୁ ଥର ସେ ଉତ୍କଳ ବିଶ୍ୱବିଦ୍ୟାଳୟର ସିନେଟ ଓ ସିଣ୍ଡିକେଟ ସଦସ୍ୟ ଭାବେ ନିର୍ବାଚିତ ହୋଇଛନ୍ତି । ସେ ଅନେକ ଥର ଉତ୍କଳ ଓ ବ୍ରହ୍ମପୁର ବିଶ୍ୱବିଦ୍ୟାଳୟର 'ଡିନ୍ ଫାକଲଟି ଅଫ୍ ଲ' ଥିଲେ ।

ନୀଳକଣ୍ଠଙ୍କ ଅନ୍ୟତମ ପୁତ୍ର ପ୍ରଫେସର ଡାଃ ବିକ୍ରମ ଦାସ ମଧ୍ୟ ସ୍ୱାଧୀନତା ସଂଗ୍ରାମୀ, ବିପ୍ଳବୀ, କବି ଓ ସାହିତ୍ୟିକ । ନିଜକୁ ଜଣେ ଉଚ୍ଚ ପଦାଧିକାରୀ ଭାବେ ଦେଖାଇ ଦେବାର ପ୍ରବୃତ୍ତି ତାଙ୍କର ନଥିଲା ବରଂ ସାଧାରଣ ଜନତାଙ୍କ ପାଇଁ ତାଙ୍କର ଅସୀମ ଦରଦ, ଶ୍ରଦ୍ଧା ଓ ସମ୍ମାନ ଥିଲା । ସ୍ୱର୍ଗତଃ ନରସିଂହ ତ୍ରିପାଠୀ, ବଳରାମ ପଣ୍ଡା, ଦିବାକର ପଟ୍ଟନାୟକ, ସରଳା ଦେବୀ, ରାଧାମୋହନ ଗଡ଼ନାୟକ ଓ ସଚ୍ଚି ରାଉତରାୟ ପ୍ରମୁଖଙ୍କ ପ୍ରତି ତାଙ୍କର ଯଥେଷ୍ଟ ସମ୍ମାନ ଥିଲା । ତାଙ୍କ ଦରଘା ବଜାର ବାସଭବନରେ ଆର୍.ଏସ୍.ଏସ୍.ର ଗୁରୁ ଗୋଲୱାଲକର, ଆଚାର୍ଯ୍ୟ ହରିହର ଦାସ, ଶରତଚନ୍ଦ୍ର ମହାରଣା ଓ ମନମୋହନ ମିଶ୍ରଙ୍କ ଭଳି ସଂଗ୍ରାମୀ ଓ ନେତାମାନଙ୍କର ବୈଠକ ବସୁଥିଲା । ତାଙ୍କର କୈଶୋର ଓ ଯୌବନ ସ୍ୱାଧୀନତା ଆନ୍ଦୋଳନରେ ଉଦ୍‌ବୁଦ୍ଧ ହୋଇଥିଲା । ରେଭେନ୍ସା କଲିଜିଏଟ୍ ସ୍କୁଲ ଛାତ୍ର ଥିବାବେଳେ ସେ ପ୍ରଥମେ ୧୯୩୯ରେ ଜେଲ ଯାଇଥିଲେ । ତାଙ୍କୁ ଅନୁଗୁଳ ସେଣ୍ଟ୍ରାଲ ଜେଲକୁ ପଠାଯାଇଥିଲା । ଗିରଫକୁ ଏଡ଼ାଇବା ପାଇଁ ସେ କିଛି ଦିନ ଆତ୍ମଗୋପନ କରିଥିଲେ । ଏହା ତାଙ୍କ ଶିକ୍ଷା ଜୀବନର ବଡ଼ ଧକ୍କା ହୋଇଥିଲେ ମଧ୍ୟ ଜାତୀୟ ଆନ୍ଦୋଳନରେ ତାଙ୍କ ସମ୍ପୃକ୍ତି କମି ନଥିଲା ।

ପଣ୍ଡିତ ନୀଳକଣ୍ଠଙ୍କ ପରିବାର ସ୍ୱାଧୀନତା ସଂଗ୍ରାମ ପ୍ରତି ଏକ ସମର୍ପିତ ପରିବାରର ମର୍ଯ୍ୟାଦାଲାଭ କରି ଓଡ଼ିଶାବାସୀଙ୍କ ପାଇଁ ପ୍ରେରଣାର ଉତ୍ସ ହୋଇଥିଲା । ପଣ୍ଡିତ ନୀଳକଣ୍ଠ, ତାଙ୍କ ପତ୍ନୀ ଓ ପୁତ୍ର ପ୍ରମୁଖଙ୍କ ରକ୍ତରେ, ଚିନ୍ତାରେ ଓ ଚେତନାରେ ମୁକ୍ତ ଓ ପ୍ରଗତିଶୀଳ ପରିକଳ୍ପନା ଉଦ୍‌ଭାସିତ ହେଉଥିଲା ।

ଦରଘା ବଜାର, କଟକ

# ବର୍ଷୀୟାନ ସଂଗ୍ରାମୀ ବିବୁଧେନ୍ଦ୍ର

କୃଷ୍ଣଚନ୍ଦ୍ର ସୁଆର

ଦେଶକୁ ପରାଧୀନତାର ଶୃଙ୍ଖଳରୁ ମୁକ୍ତ କରିବା ପାଇଁ ଜାତୀୟ ସ୍ୱାଧୀନତା ସଂଗ୍ରାମରେ ଝାସ ଦେଇ ଅବିସ୍ମରଣୀୟ ହୋଇଥିବା ପ୍ରତିଭାଧରଙ୍କ ମଧ୍ୟରେ ବର୍ଷୀୟାନ ସଂଗ୍ରାମୀ ବିବୁଧେନ୍ଦ୍ର ମିଶ୍ର ଅନ୍ୟତମ ।

ନେତାଜୀ ସୁଭାଷ ବୋଷଙ୍କ ପ୍ରତ୍ୟକ୍ଷ ସଂସ୍ପର୍ଶରେ ଆସିଥିବା ବ୍ୟକ୍ତିଙ୍କ ମଧ୍ୟରେ ସେ ଅଗ୍ରଗଣ୍ୟ । ତାଙ୍କୁ ଅଠାଅଶୀ ବର୍ଷ ବୟସ ହୋଇଥିଲେ ହେଁ ଏବେ ବି କର୍ମଚଞ୍ଚଳ, ସଦା ହସମୁଖରେ ଦେଶ ଓ ଜାତି ପାଇଁ କେତେ ନା କେତେ ଚିନ୍ତା ଆଉ ଦରଦ ତାଙ୍କର । ସ୍ୱାଧୀନତା ସଂଗ୍ରାମ କାଳରେ ଜେଲ ଜୀବନ, ସାମ୍ବାଦିକତା, ଆଇନଜ୍ଞରୁ ରାଜନୈତିକ ନେତା ଓ କେନ୍ଦ୍ରମନ୍ତ୍ରୀ ପୁଣି ସମାଜ କଲ୍ୟାଣ ସହ ଉପାଦେୟ ପୁସ୍ତକ ରଚନା କରିବାର ପ୍ରତ୍ୟେକଟି କ୍ଷେତ୍ରରେ ନିଜକୁ ସଂପୃକ୍ତ କରିଛନ୍ତି ବିବୁଧେନ୍ଦ୍ର ମିଶ୍ର । ଏକ ନିରହଙ୍କାରୀ, ସଚ୍ଚା ମଣିଷ, ମୁରବୀ ଶ୍ରେଣୀୟ, 'କୁନି ଭାଇନା' ନାମରେ ସବୁରି ପ୍ରିୟ ଓ ପରିଚିତ ସେ ।



ସାଂପ୍ରତିକ ପରିସ୍ଥିତିରେ ନୈତିକତାର ସ୍ଖଳନ ଘଟି ଗଣତାନ୍ତ୍ରିକ ଶାସନର ମେରୁଦଣ୍ଡ ଭାଙ୍ଗିଯାଇଛି, ଏପରି ସମୟରେ ଯଦି ମୂଲ୍ୟବୋଧର ପୁନରୁତ୍ଥାନ ଏବଂ ଆଦର୍ଶରେ ବିଶ୍ୱାସ ଉପୁଜେ ତେବେ ସ୍ୱାଧୀନ ଭାରତର ଭବିଷ୍ୟତ ଉଜ୍ଜ୍ୱଳ ବୋଲି ଏକ ସାକ୍ଷାତକାରରେ ସେ କହନ୍ତି ।

ଛୋଟ ବେଳୁ ସେ ଜାତୀୟତା ଭାବ ଭିତରେ ବଢ଼ିଥିଲେ ଏବଂ ପରବର୍ତ୍ତୀ ସମୟରେ ତାଙ୍କ ଜେଜେ ବାପା ଜାତୀୟତାବାଦୀ ସଂଗ୍ରାମୀ ଦିବ୍ୟସିଂହ ମିଶ୍ର, ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, ଲିଙ୍ଗରାଜ ମିଶ୍ର, ଶଶିଭୂଷଣ ରଥ, ଅନନ୍ତ ମିଶ୍ର, ଆଚାର୍ଯ୍ୟ ହରିହର ପ୍ରଭୃତି ମହାମାନ୍ୟ ନେତାମାନଙ୍କ ପଦାଙ୍କ ଅନୁସରଣ କରିଥିଲେ । ତାଙ୍କ ଜେଜେବାପା ଥିଲେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ଗୁରୁ । ତେବେ ପରାଧୀନ ଭାରତରେ ଫରୱାର୍ଡ଼ ବ୍ଲକ୍‌ର ଫାଉଣ୍ଡର ସଦସ୍ୟ ହେବାର ସୌଭାଗ୍ୟ ଏବଂ ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଓ ଭଗବତୀ ଚରଣ ପାଣିଗ୍ରାହୀଙ୍କ ପ୍ରେରଣାରେ ସେ ଅନୁପ୍ରାଣିତ ହେବା ସଂଗେ ସେ ଓଡ଼ିଶା ଶାଖାର ନେତୃତ୍ୱ ନେଇ ବ୍ରିଟିଶ ସରକାର ବିରୋଧରେ ଯାଇ ଅଭିଯୁକ୍ତ ହୋଇ ଫାଶୀ ପାଇବାରୁ ନିବର୍ତ୍ତି ଯିବା ଘଟଣାଗୁଡ଼ିକ ଉଲ୍ଲେଖଯୋଗ୍ୟ ମନେହୁଏ ।

ସେତେବେଳେ ଖୋଲାଖୋଲି ସରକାରଙ୍କ ବିରୋଧରେ କିଛି ଲେଖାଲେଖି କରିବା ସହଜ ସାଧ୍ୟ ନଥିଲା । ଯାହାସବୁ ଲୁଚାଛପାରେ କରାଯାଉଥିଲା । ଭଗବତୀ ବାବୁ ଲୁଚି ରହି ମୁକ୍ତି ସଂଗ୍ରାମର ବାର୍ତ୍ତା ତିଆରି କରୁଥିଲେ । ଇଂରେଜ ଶାସନ ବିରୋଧରେ ଜନମତ ସୃଷ୍ଟି ପାଇଁ ଗୋପନରେ ପ୍ରଚାରପତ୍ର ବାଣ୍ଟିବା ତାଙ୍କର କାମ ଥିଲା । ଗୋଟିଏ ଲିଥୋ ମେସିନ୍ ତାଙ୍କର ଥିଲା ଏକମାତ୍ର ସମ୍ବଳ । ଗୁଇନ୍ଦା ପୋଲିସ୍ କେତେକ ଘଟଣାରେ ତାଙ୍କ ପିଛା ଲାଗିଥିଲା । ଘର ଖାନତଲାସି ଆଶଙ୍କା କରି ଲିଥୋ ମେସିନ୍ ନେଇ ଲୁଚାଇ ଦେବାକୁ ଭଗବତୀ ବାବୁ ତାଙ୍କୁ କହିବାରୁ ସେ ଜଗନ୍ନାଥ ବଲ୍ଲଭ ମଠ ବଗିଚାରେ ତାହାକୁ ଲୁଚାଇ ରଖିଥିଲେ । ତା' ନହୋଇ ଥିଲେ ପୁଲିସ ଘର ଖାନତଲାସି ବେଳେ ଧରାପଡ଼ି ଅସୁବିଧାର ସମ୍ମୁଖୀନ ହୋଇଥାନ୍ତେ ।

୧୯୪୦ ମସିହାରେ ରେଭେନ୍ସାରେ ଅଧ୍ୟୟନ କାଳରେ ଜାତୀୟ ପତାକା ଜାନୁଆରୀ ୨୬ ତାରିଖ ଦିନ ଉତ୍ତୋଳନ କରିବା ସଂଗେସଂଗେ ଜଣେ ଛାତ୍ରନେତା ଭାବେ ଗୋରା ସାହେବମାନଙ୍କ ଅତ୍ୟାଚାର ବିରୋଧରେ ଭାଷଣ ଦେଇ ସେ କଲେଜରୁ ବହିଷ୍କୃତ ହୋଇ କାରାବରଣ କରିଥିଲେ । ୧୯୪୨ ଭାରତଛାଡ଼ ଆନ୍ଦୋଳନରେ ରେଭେନ୍ସା କଲେଜ ଅଫିସ୍ ପୋଡ଼ିବା ଅଭିଯୋଗରେ ଗିରଫ ହୋଇ ସେ ମଧ୍ୟ କାରାବରଣ କରିଥିଲେ । ତାଙ୍କ ସହିତ ଥିଲେ ସଂଗ୍ରାମୀ ସୁରଜମଲ୍ଲ ସାହା । ଉଭୟେ କଟକ ଜେଲରେ ରହିଥିଲେ । କଟକ ଜେଲରେ ଗିରଫ ହୋଇ ପୂର୍ବରୁ ବହୁ ମାନ୍ୟଗଣ୍ୟ ସ୍ୱାଧୀନତା ସଂଗ୍ରାମୀମାନେ ଥିଲେ । କିଛିଦିନ ପରେ କଟକ ଜେଲ୍‌ରୁ ବ୍ରହ୍ମପୁର ଜେଲକୁ ବଦଳି ହୋଇ ଯାଇଥିଲେ । ରେଭେନ୍ସା କଲେଜ ପୋଡ଼ି ଘଟଣାରେ ତାଙ୍କ ବିରୋଧରେ କୌଣସି ପ୍ରମାଣ ନମିଳିବାରୁ ବନ୍ଧୁ

ସୁରଜମଲ୍ଲ ସାହାଙ୍କ ସହ ୧୯୪୩ ମସିହା ମାର୍ଚ୍ଚ ମାସରେ ଖଲାସ ହୋଇ ସେ ପୁରୀରେ ଅବସ୍ଥାନ କରିଥିଲେ । ସେତିକିବେଳେ ଫରଓ୍ୱାର୍ଡ଼ ବ୍ଲକ୍ ବେଆଇନ ଦଳ ରୂପେ ଘୋଷିତ ହୋଇ ସାରିଥିଲା । ଫରଓ୍ୱାର୍ଡ଼ ବ୍ଲକ୍‌ର ଗୁପ୍ତ ସଂଗଠନରେ ସେ ପୂର୍ବରୁ ଜଡ଼ିତ ଥିଲେ । ନେତାଜୀଙ୍କ ଯୋଜନା ଅନୁଯାୟୀ 'ଆଜାଦ୍ ହିନ୍ଦ୍ ଫୌଜ'ର ଗୋଟିଏ ଆଗୁଆ ଦଳ ସମୁଦ୍ର ବାଟ ଦେଇ ପୁରୀରେ ପହଞ୍ଚିବାର ଥିଲା । ଫରଓ୍ୱାର୍ଡ଼ ବ୍ଲକ୍ ଗୁପ୍ତ କାର୍ଯ୍ୟକ୍ରମର ଦାୟିତ୍ୱରେ ସେ ପୁରୀରେ ରହିଥିଲେ । ତାଙ୍କୁ କମାଣ୍ଡର ବ୍ୟାଜ୍ ଦିଆଯାଇଥିଲା । ହଠାତ୍ ତାଙ୍କ ଘର ଖାନତଲାସ କରି ଗିରଫ କରାଗଲା । ତାଙ୍କ ସହ ଥିଲେ ସୁରଜ୍ । ଉଭୟେ ପୁରୀ ଜେଲରେ ରହିଥିଲେ । ସେତେବେଳକୁ ପୁରୀ ଜେଲରେ ନିମାପଡ଼ା ଆନ୍ଦୋଳନରେ ଭାଗ ନେଇଥିବା ବହୁ ଛାତ୍ର ଥିଲେ । କିଛି ଦିନ ପରେ ପୁରୀ ଜେଲରୁ ତାଙ୍କୁ କେନ୍ଦ୍ରୀୟ ଜେଲ ବ୍ରହ୍ମପୁରକୁ ପୁଣି ନିଆଯାଇଥିଲା । ଇଂରେଜ ସରକାରଙ୍କୁ ଭାରତରୁ ବିତାଡ଼ିତ କରିବା ପାଇଁ ସେମାନଙ୍କ ଶତ୍ରୁ ସୁଭାଷ ବୋଷଙ୍କ ସହିତ ଷଡ଼ଯନ୍ତ୍ରରେ ଲିପ୍ତ ବୋଲି ତାଙ୍କ ବିରୋଧରେ ଅଭିଯୋଗ ଥିଲା । ସେ କିନ୍ତୁ ଏହାକୁ ଏକ ସାର୍ଟିଫିକେଟ ରୂପେ ଗ୍ରହଣ କରିଥିଲେ ।

ଅଗଷ୍ଟ ଆନ୍ଦୋଳନରେ ଗିରଫ ହୋଇ ବହୁକର୍ମୀ ବିଭିନ୍ନ ଜେଲରେ ଥିଲେ । ତା'ଛଡ଼ା ଅଟକବନ୍ଦୀମାନେ ବ୍ରହ୍ମପୁରର ସ୍ୱତନ୍ତ୍ର ଜେଲରେ ଥିଲେ । ସେଥିଲା ଏକ ବିରାଟ ପରିବାର ଭଳି । ବହୁ ବୟୋଜ୍ୟେଷ୍ଠ, ମାନ୍ୟଗଣ୍ୟ ସଂଗ୍ରାମୀ ଓ ଜନନେତାଙ୍କ ସହ ଜେଲରେ ସାନ୍ନିଧ୍ୟଲାଭ କରିଥିଲେ । ଗୋପବନ୍ଧୁ ଚୌଧୁରୀ, ନବକୃଷ୍ଣ ଚୌଧୁରୀ, ମନମୋହନ ଚୌଧୁରୀ, ଶରତଚନ୍ଦ୍ର ମହାରଣା, ନିତ୍ୟାନନ୍ଦ କାନୁନ୍‌ଗୋ, ଭାଗୀରଥି ମହାପାତ୍ର, ସୁରେନ୍ଦ୍ରନାଥ ଦ୍ୱିବେଦୀ, ଗୌରାଙ୍ଗ ଚରଣ ଦାସ, ପ୍ରାଣକୃଷ୍ଣ ପଡ଼ିଆରୀ, ଅନୀଲ ଘୋଷ, ଅନ୍ନପୂର୍ଣ୍ଣା ମହାରଣା, ବିଶ୍ୱନାଥ ଦାସ, ଉମାଚରଣ ପଟ୍ଟନାୟକ, ନିତ୍ୟାନନ୍ଦ ମହାପାତ୍ର, ରାଧାନାଥ ରଥ, ବାଙ୍କ ବିହାରୀ ଦାସ, ଗୌରଚନ୍ଦ୍ର ମହାପାତ୍ର, ଦୋଳଗୋବିନ୍ଦ ପ୍ରଧାନ, ବଳରାମ ମହାନ୍ତି ପ୍ରଭୃତି ଅଟକବନ୍ଦୀ ହୋଇଥିଲେ । ସେ ୯ ନମ୍ବର ଓ୍ୱାର୍ଡ଼ରେ ରହୁଥିଲେ । ଭାରତଛାଡ଼ି ଚାଲିଯିବାକୁ ବ୍ରିଟିଶ ସରକାରକୁ ଆହ୍ୱାନ ସ୍ୱରୂପ ସମସ୍ତ ସଂଗ୍ରାମୀମାନେ ମିଶି ୧୯୪୪ ଜାନୁଆରୀ ୨୬ ତାରିଖ ସ୍ୱାଧୀନତା ଦିବସ ଦିନ ଜେଲଖାନା ଭିତରେ ଜାତୀୟ ପତାକା ଉତ୍ତୋଳିତ କରିଥିଲେ । (ସେତେବେଳେ ଜାନୁଆରୀ ୨୬କୁ ଭାରତର ସ୍ୱାଧୀନତା ଦିବସ ଭାବେ ସଂଗ୍ରାମୀମାନେ ପାଳନ କରୁଥିଲେ) ଏଥିରେ ଉତ୍‌କ୍ଷିପ୍ତ ହୋଇ ଜିଲ୍ଲା ମାଜିଷ୍ଟ୍ରେଟଙ୍କର ଉପସ୍ଥିତିରେ ପୁଲିସ୍‌ର ଆଖିବୁଜା ନିର୍ମମ ଲାଠିମାଡ଼ ଓ ପ୍ରହାରରେ ବହୁ ଗାନ୍ଧିବାଦୀ ଓ ଦେଶପ୍ରେମୀ ଆହତ ହୋଇ ତାଙ୍କ ସହିତ ଡାକ୍ତରଖାନାକୁ ଯାଇଥିଲେ, କିନ୍ତୁ ଆମ ପତାକାକୁ ନେଇ ପାରିନଥିଲେ ।

ସର୍ବଭାରତୀୟ ସ୍ତରରେ ଫରଓ୍ୱାର୍ଡ଼ ବ୍ଲକ୍‌ର କେତେକ ସଭ୍ୟଙ୍କ ବିରୋଧରେ ଶତ୍ରୁ ଏଜେଣ୍ଟ ଅଡ଼ିନାନ୍ସ ଅନୁଯାୟୀ ବିଚାର କରିବାକୁ ସ୍ଥିର କରି କେନ୍ଦ୍ର ସରକାର ତାଙ୍କ ବିରୋଧରେ ମଧ୍ୟ ତଦନ୍ତ ଆରମ୍ଭ କରିଥିଲେ । ତଦନୁଯାୟୀ ତାଙ୍କ ସହିତ ସୁରଜ୍, ହରିହର ପୂଜାପଣ୍ଡା, ମୋତିଲାଲ ତ୍ରିପାଠୀ, ଉମାପଦ ତ୍ରିପାଠୀ ପ୍ରଭୃତି ସାଥୀଙ୍କୁ କଟକ ଜେଲକୁ ଅଣାଯାଇଥିଲା । ଆଠ ନମ୍ବର ସେଲରେ ସେମାନେ ସେତିକିବେଳେ ରହୁଥିଲେ । ପ୍ରଦେଶ ପୁଲିସ୍ ବିଭାଗର ଡି.ଆଇ.ଜି. ତାଙ୍କୁ ଜେରା କରିବା ସହିତ ଅନେକ ପ୍ରଶ୍ନ ପଚାରି ଘର ଖାନତଲାସି କରିଥିଲେ । ତାଙ୍କର 'କମାଣ୍ଡର' ବ୍ୟାଜକୁ ସେତେବେଳେ ତାଙ୍କ ଭାଇନା ବାଡ଼ିଆଡ଼େ ଥିବା ରୋଷେଇ ଘର ଚାଳ ଉପରେ ଲୁଚାଇ ଦେଇଥିଲେ । ଫଳରେ କୌଣସି ପ୍ରମାଣ ପାଇପାରି ନଥିଲେ । ସେ ବ୍ରହ୍ମପୁର ଜେଲରୁ ୧୯୪୫ ମସିହା ସେପ୍ଟେମ୍ବର ୧୨ ତାରିଖରେ ଖଲାସ ହେଲେ ।

ଜଣେ ଛାତ୍ରନେତା ଭାବରେ କେବଳ ଯେ ତାଙ୍କର ସୁନାମ ଥିଲା ତାହା ନୁହେଁ, କଲେଜରେ ପଢ଼ିବା ସମୟରୁ ସାମ୍ବାଦିକତା ସହିତ ବି ଯୋଡ଼ି ହୋଇ ଯାଇଥିଲେ । ଦ୍ୱିତୀୟ ବର୍ଷ ପଢ଼ିବାବେଳେ କଲିକତାରୁ ପ୍ରକାଶିତ ଇଂରାଜୀ ସମ୍ବାଦପତ୍ର 'ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡ଼'ର ପ୍ରତିନିଧି ଭାବେ ସେ କାର୍ଯ୍ୟ କରିଥିଲେ । ୧୯୪୦ ମସିହାରେ ନିଖିଳ ଉତ୍କଳ ଛାତ୍ର ଫେଡ଼େରେସନର ସାଧାରଣ ସଂପାଦକ ଥିଲାବେଳେ ତାଙ୍କ ସଂପାଦନାରେ 'ଛାତ୍ର ଶକ୍ତି' ନାମକ ଏକ ସାପ୍ତାହିକ ପତ୍ରିକା ପ୍ରକାଶିତ ହେଉଥିଲା । ୧୯୪୧ ମସିହାରେ ପଣ୍ଡିତ ନୀଳକଣ୍ଠ ଦାସଙ୍କ ସଂପାଦନାରେ 'ନବଭାରତ' ପତ୍ରିକା ପ୍ରକାଶିତ ହେବା ସମୟରୁ ଗିରଫ ହେବା ପର୍ଯ୍ୟନ୍ତ ସେ ତାଙ୍କର ସହକାରୀ ଥିଲେ । ରାଧାନାଥ ରଥ ସମାଜ ସଂପାଦକ ହେଲେ । ସେ ୧୯୪୫ ମସିହାରେ ବ୍ରହ୍ମପୁର ଜେଲରୁ ଖଲାସ ହେବା ପରେ ପରେ କଟକ ଆସି ବିବୁଧେନ୍ଦ୍ର ଦୈନିକ ସମାଜର ସହକାରୀ ସଂପାଦକ ଭାବେ ଯୋଗ ଦେଇଥିଲେ । ହିନ୍ଦୁପ୍ରେସ୍, ଅଭ୍ୟୁଦୟ ପତ୍ରିକା ଓ ଇଂରାଜୀ ସମ୍ବାଦପତ୍ର 'ଦି ନେସନ'ର ମଧ୍ୟ ଓଡ଼ିଶା ପ୍ରତିନିଧି ଭାବେ ସେ କାର୍ଯ୍ୟ ତୁଲାଇଥିଲେ । ପରବର୍ତ୍ତୀ ସମୟରେ ଦୈନିକ ମାତୃଭୂମି ଓ ୧୯୮୦ରୁ ୧୯୮୫ ପର୍ଯ୍ୟନ୍ତ ଦୈନିକ 'ଦିନଲିପି'ର ସଂପାଦନା ଦାୟିତ୍ୱରେ ସେ ଥିଲେ ।

୧୯୫୮ରେ ସେ ରାଜ୍ୟସଭାକୁ ନିର୍ବାଚିତ ହୋଇଥିଲେ । ୧୯୬୨-୬୭ ପର୍ଯ୍ୟନ୍ତ ସେ ପୁରୀରୁ ଲୋକସଭାକୁ ନିର୍ବାଚିତ ହୋଇ କେନ୍ଦ୍ର ଆଇନ ଓ ଶିକ୍ଷା ବିଭାଗରେ ରାଷ୍ଟ୍ରମନ୍ତ୍ରୀ ଥିଲେ । ଅଷ୍ଟ୍ରେଲିଆରେ ଅନୁଷ୍ଠିତ ହେଉଥିବା ପ୍ରଥମ ମାନବାଧିକାର ସମ୍ମିଳନୀକୁ ସେତେବେଳେ ପଣ୍ଡିତ ନେହରୁ ବିବୁଧେନ୍ଦ୍ରଙ୍କୁ ପଠାଇବା ଘଟଣା ଅନେକଙ୍କୁ ବିସ୍ମୟାଭିଭୂତ କରି ଦେଇଥିଲା ।

୧୯୬୭ ମସିହାରେ ଲୋକସଭା ନିର୍ବାଚନରେ ପରାଜିତ ହେବା ପରେ ରାଜନୀତିରେ ଦେଖା ଦେଉଥିବା ବିଲକ୍ଷଣରେ ତାଙ୍କର ମନ ମ୍ଳାନ ପଡ଼ି ଯାଇଥିଲା । କ୍ଷମତା ରାଜନୀତିରୁ ଦୂରେଇ ରହିବାକୁ ସେ ଶ୍ରେୟ ମଣି ଆଇନ ପେଶାରେ ମନୋନିବେଶ କରିଥିଲେ । ଏକାଧିକ ଥର ଓଡ଼ିଶା ହାଇକୋର୍ଟ ବାର ଆସୋସିଏସନର ସଭାପତି ହୋଇଥିଲେ । ଓଡ଼ିଶା କ୍ରିକେଟ ଆସୋସିଏସନର ପ୍ରତିଷ୍ଠାତା ସଦସ୍ୟ ଓ ଉତ୍କଳ

ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ସଭ୍ୟ ସେ ଥିଲେ ।

ଜଣେ ପଠନ ପ୍ରିୟ ମଣିଷ ଥିଲେ ବିବୁଧେନ୍ଦ୍ର । ବିଭିନ୍ନ ପତ୍ରପତ୍ରିକାରେ କେତେକ ଉପାଦେୟ ଲେଖାଲେଖିବା ସାଂଗକୁ ସେ ରଚନା କରିଥିଲେ - ୧) ସ୍ୱାଧୀନତା ସଂଗ୍ରାମର କେତେକ ତୁଙ୍ଗନେତାଙ୍କ ଜୀବନୀ, ୨) ମଣିଷ ପରି ମଣିଷ, ୩) ସମ୍ବାଦପତ୍ର ଓ ସାମ୍ବାଦିକ, ୪) ଖିଆଲ, ୫) ଅସମାପ୍ତ, ୬) ୧୯୪୨, ୭) ମାଟ୍ରିକୁଲେସନ୍ ଇତିହାସ ଓ ୮) ଆତ୍ମଜୀବନ ଚରିତ 'ଜୀବନଯାତ୍ରା ପଥରେ' ।

ଏହି ବହୁମୁଖୀ ପ୍ରତିଭାସଂପନ୍ନ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ ୧୯୨୦ ମସିହା ନଭେମ୍ବର ମାସ ୩୦ ତାରିଖରେ ପୁରୀର କୁଣ୍ଡାଇବେଣ୍ଟ ସାହିରେ । ତାଙ୍କ ପିତାଙ୍କ ନାମ ଗୋପୀନାଥ ମିଶ୍ର ଓ ମାତାଙ୍କ ନାମ ମୁକ୍ତାବାଳା ଦେବୀ ।

୧୯୮୭ ମସିହାରେ ଭିଏନାରେ ଅନୁଷ୍ଠିତ 'ବିଶ୍ୱଶାନ୍ତି ସମ୍ମିଳନୀ'ରେ ଭାରତୀୟ ଦଳର ସଭ୍ୟ ଭାବେ ଆମେରିକା ଭ୍ରମଣରେ ଯାଇଥିଲେ । ରାଜନୀତିରେ ଯୋଗଦାନ ସତ୍ତ୍ୱେ ସେ ପେଷାରେ ମୁଖ୍ୟତଃ ଜଣେ ଜନପ୍ରିୟ ଆଡ଼ଭୋକେଟ୍ । ଏହି କାର୍ଯ୍ୟ ସଂପାଦନରେ ତାଙ୍କର ଆନ୍ତରିକତା ଓ ପଦକ୍ଷେପ ଦୃଢ଼ । ଓକିଲାତିର ବିଭିନ୍ନ ବିଭାଗରେ କେସ୍ ପରିଚାଳନା ସତ୍ତ୍ୱେ କେତେକ ରାଜନୈତିକ ସମସ୍ୟା ଜଡ଼ିତ କେସ୍‌ର ପରିଚାଳନା କରି ସେ ବହୁଖ୍ୟାତି ଅର୍ଜନ କରିଥିଲେ ।

ଏକାଧାରରେ ଜଣେ ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ, ସାମ୍ବାଦିକ, ଲେଖକ, ସଂପାଦକ, ସଂଗଠକ, ଆଇନଜ୍ଞ, ବର୍ଷୀୟାନ ରାଜନେତା, କେନ୍ଦ୍ରମନ୍ତ୍ରୀ, ମିଷ୍ଟଭାଷୀ ତଥା ସବୁରି ପ୍ରିୟ ମଣିଷ ।

ଏହି ବହୁମୁଖୀ ପ୍ରତିଭାସଂପନ୍ନ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ ୧୯୨୦ ମସିହା ନଭେମ୍ବର ମାସ ୩୦ ତାରିଖରେ ପୁରୀର କୁଣ୍ଡାଇବେଣ୍ଟ ସାହିରେ । ତାଙ୍କ ପିତାଙ୍କ ନାମ ଗୋପୀନାଥ ମିଶ୍ର ଓ ମାତାଙ୍କ ନାମ ମୁକ୍ତାବାଳା ଦେବୀ । ସେ ବାପାଙ୍କୁ ନନା ବୋଲି ଡାକୁଥିଲେ । ବାପାଙ୍କୁ ସାଧାରଣତଃ ବ୍ରାହ୍ମଣ କୂଳରେ ପୁରୀ ଓ ଗଞ୍ଜାମରେ ଲୋକମାନେ ନାନା ବୋଲି ଡାକନ୍ତି । ତାଙ୍କ ନନା ସେସମୟରେ ଅତି ଜଣାଶୁଣା ବ୍ୟକ୍ତି ଥିଲେ । ବହୁ ଅନୁଷ୍ଠାନ ସହିତ ତାଙ୍କର ସଂପୃକ୍ତ ଥିଲା । ଘରେ ଗୋଟିଏ ପ୍ରାଇମେରୀ ସ୍କୁଲ ପ୍ରତିଷ୍ଠା କରିଥିଲେ । କିଛି କାଳ ସେ ଅନସରୀ ମାଜିଷ୍ଟ୍ରେଟ ଓ ପରେ ଗଡ଼ଜାତରେ ବିଭିନ୍ନ ପଦବୀରେ କାର୍ଯ୍ୟ କରିଥିଲେ । ଉତ୍କଳଗୌରବ ମଧୁସୂଦନ ଦାସଙ୍କ ସଂସ୍ପର୍ଶରେ ସେ ଆସିଥିଲେ । ତାଙ୍କ ମାତା ମୁକ୍ତାବାଳା ଦେବୀ ଥିଲେ ଜଣେ ଆଶୁକବି । ମୁହେଁ ମୁହେଁ ଗୀତ ତିଆରି କରି ଘର କାମ କଲାବେଳେ ବୋଲୁଥିଲେ ଓ ନାନା ପୁରାଣ କଥା ଉପଦେଶ ଛଳରେ କହୁଥିଲେ । କାଗଜ କଲମ ତାଙ୍କ ଆବଶ୍ୟକତା ପଡ଼େ ନାହିଁ କବିତା ଲେଖିବାକୁ । ସେ ଏତେ ମନରୁ କହିବାରେ ଅଭ୍ୟସ୍ତ ଥିଲେ ଯେ କଟକ ଆକାଶବାଣୀ କେନ୍ଦ୍ରରେ କାର୍ଯ୍ୟରତ ସାହିତ୍ୟିକ କାଳିନ୍ଦୀଚରଣ ପାଣିଗ୍ରାହୀ ତାଙ୍କର କେତେକ କବିତାକୁ କଟକ ବେତାର କେନ୍ଦ୍ରରୁ ପରିବେଷଣ କରିଥିଲେ ।

ତାଙ୍କଭଳି ପୁରୁଖା ସଂଗ୍ରାମୀ ଓ ରାଜନୀତିଜ୍ଞ ବାସ୍ତବରେ ଆଜି ବିରଳ । ସେହି ନୀତିନିଷ୍ଠ ଭୀଷ୍ମ ପିତାମହଙ୍କ ଆଦର୍ଶରେ ଆମେ ଅନୁପ୍ରାଣିତ ହୋଇପାରିଲେ ଜୀବନ ସଂଘର୍ଷ ବାସ୍ତବ ଉପଲବ୍ଧି ହୋଇପାରନ୍ତା ।

ଏମ୍.ଆଇ.ଜି.- ଓ୍ୱାନ୍-୪୨/୧
ଚନ୍ଦ୍ରଶେଖରପୁର ହାଉସଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର-୧୬

---

# ରାଜନୈତିକ ଦଳମାନଙ୍କ ସହ ମୁଖ୍ୟ ନିର୍ବାଚନ ଅଧିକାରୀଙ୍କ ଆଲୋଚନା

ଗତ ୨୧ ତାରିଖ ଦିନ ଚିଠା ଭୋଟର ତାଲିକା ପ୍ରକାଶ ପାଇଛି । ଆସନ୍ତା ୦୮.୯.୦୮ ତାରିଖରେ ଚୂଡ଼ାନ୍ତ ତାଲିକା ପ୍ରକାଶ ପାଇବ । ବର୍ତ୍ତମାନ ଚାଲିଥିବା ଏହି ଫଟୋ ଭୋଟର ତାଲିକାର ସ୍ୱତନ୍ତ୍ର ସଂଶୋଧନ ନେଇ ମୁଖ୍ୟ ନିର୍ବାଚନ ଅଧିକାରୀ ଶ୍ରୀମତୀ ଅଳକା ପଣ୍ଡା ବିଭିନ୍ନ ସ୍ୱୀକୃତିପ୍ରାପ୍ତ ରାଜନୈତିକ ଦଳମାନଙ୍କ ସହ ଆଲୋଚନା କରିଛନ୍ତି । ଚୂଡ଼ାନ୍ତ ଭୋଟର ତାଲିକା ପ୍ରକାଶନ ପରେ ଭୋଟର ପରିଚୟ ପତ୍ର ପ୍ରଦାନ ପାଇଁ ଫଟୋ ଉଠାଣ କାର୍ଯ୍ୟକ୍ରମ ଆରମ୍ଭ କରାଯିବ ବୋଲି ଶ୍ରୀମତୀ ପଣ୍ଡା ଆଲୋଚନା କାଳରେ ସୂଚନା ଦେଇଥିଲେ । ତେବେ ବର୍ତ୍ତମାନ ଚାଲିଥିବା ସ୍ୱତନ୍ତ୍ର ଭୋଟର ତାଲିକା ସଂଶୋଧନ - ୨୦୦୮ ପ୍ରକ୍ରିୟାରେ ସହଯୋଗ ପାଇଁ ସେମାନଙ୍କୁ ମୁଖ୍ୟ ନିର୍ବାଚନ ଅଧିକାରୀ ଅନୁରୋଧ କରିଥିଲେ ।

ଉକ୍ତ ବୈଠକରେ ଭାରତୀୟ ଜାତୀୟ କଂଗ୍ରେସ, ଭାରତୀୟ ଜନତାପାର୍ଟି, ଭାରତୀୟ କମ୍ୟୁନିଷ୍ଟ ପାର୍ଟି, ଭାରତୀୟ କମ୍ୟୁନିଷ୍ଟ ପାର୍ଟି (ମାର୍କସିଷ୍ଟ), ବହୁଜନ ସମାଜପାର୍ଟି, ରାଷ୍ଟ୍ରୀୟ କଂଗ୍ରେସ ପାର୍ଟି ଓ ବିଜୁ ଜନତା ଦଳର ପ୍ରତିନିଧିମାନେ ଯୋଗ ଦେଇଥିଲେ ।

# ସଂଗ୍ରାମୀ ସ୍ୱପ୍ନାନନ୍ଦ ପାଣିଗ୍ରାହୀ

ପବିତ୍ର ମୋହନ ବାରିକ

ଭାରତୀୟ ସ୍ୱାଧୀନତା ସଂଗ୍ରାମର ଅଂଶବିଶେଷ ଗଡ଼ଜାତ ପ୍ରଜା ଆନ୍ଦୋଳନ ମୁକ୍ତି ଯୁଦ୍ଧର ଇତିହାସରେ ଏକ ରକ୍ତାକ୍ତ ତଥା ଲୋମହର୍ଷକାରୀ ଅଧ୍ୟାୟ । ଭାରତବର୍ଷର ୬୦୩ଟି ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରୁ ଓଡ଼ିଶାର ୨୬ଟି ଅନ୍ତର୍ଭୁକ୍ତ ଥିଲା । କେତେକ ରାଜା ଇଂରେଜ ଶକ୍ତିର ବାହୁଚ୍ଛାୟା ତଳେ ଆଶ୍ରୟ ନେଇ ନିରୀହ ପ୍ରଜାମାନଙ୍କୁ ଅମାନୁଷିକ ତଥା ଅବିବେକୀ ବ୍ୟବହାର ପ୍ରଦାନ କରି ଆସୁଥିଲେ । ଗଡ଼ଜାତ ଅନ୍ଧାରୀ ଶାସନରେ ପ୍ରଜାକୁଳ ସାମାଜିକ, ରାଜନୈତିକ ଓ ଅର୍ଥନୈତିକ କ୍ଷେତ୍ରରେ ଶୋଷଣର ଶିକାର ହେଉଥିଲେ । ବେଠି, ବେଗାରି, ରସଦ, ମାଜଣ ପ୍ରଭୃତି ଅମାନୁଷିକ କର ଶାନ୍ତିପ୍ରିୟ ଗରିବ ପ୍ରଜାମାନଙ୍କଠାରୁ ନିର୍ଦ୍ଦୟ ତଥା ଅନ୍ୟାୟ ଭାବରେ ସଂଗ୍ରହ କରି ଓଡ଼ିଶାର ତତ୍କାଳୀନ କେତେକ ନିଜ ଅହଂକାରୀତାର ପରିଚୟ ଦେଇଥିଲେ । ପ୍ରଜାମାନଙ୍କୁ ଅତ୍ୟାଚାର, ଶୋଷଣ, କଷଣ ଓ ନିର୍ଯାତନା ଦେଇ ସେମାନେ ନଭଶ୍ଚୁମ୍ବୀ ମନୋରମ ରାଜପ୍ରସାଦ ମଧ୍ୟରେ ଆଡ଼ମ୍ବର ତଥା ବିଳାସପୂର୍ଣ୍ଣ ଜୀବନ ଅତିବାହିତ କରି ଆସୁଥିଲେ । ସେମାନଙ୍କ ଅତ୍ୟାଚାର, ବ୍ୟଭିଚାର, ଦୁର୍ନୀତି ଏବଂ ବହୁଦିନର ଅସନ୍ତୋଷ ପରବର୍ତ୍ତୀ ସମୟରେ ଉଗ୍ର ରୂପ ଧାରଣ କଲା । କଳା ଶାସନ ବିରୁଦ୍ଧରେ ଗଡ଼ଜାତମାନଙ୍କରେ ଆରମ୍ଭ ହେଲା ପ୍ରଜା ଆନ୍ଦୋଳନ । ପ୍ରତ୍ୟେକ ଗଡ଼ଜାତରେ 'ପ୍ରଜାମଣ୍ଡଳ' ଗଠନ କରାଯାଇ ରାଜୁଡ଼ା ଶାସନ ବିରୁଦ୍ଧରେ ବିଧିବଦ୍ଧ ଭାବରେ ସଂଗ୍ରାମ ଆରମ୍ଭ ହେଲା । ବ୍ୟକ୍ତିଗତ ଅଧିକାରର ସୁରକ୍ଷା, ପ୍ରତିନିଧିମୂଳକ ଶାସନ ବେଠି, ବେଗାରି, ରସଦ ପ୍ରଭୃତି ଉଚ୍ଛେଦ ଦାବିରେ ପ୍ରଜାମଣ୍ଡଳ ଅତ୍ୟାଚାରୀ ରାଜାମାନଙ୍କ ବିରୋଧରେ ଯୁଦ୍ଧ ଘୋଷଣା କଲା । ଓଡ଼ିଶାର ତତ୍କାଳୀନ ୨୬ଟି ଗଡ଼ଜାତ ରାଜ୍ୟମାନଙ୍କ ମଧ୍ୟରେ ବଲାଙ୍ଗିର-ପାଟଣା ଅନ୍ୟତମ । ଏହି ଦେଶୀୟ ରାଜ୍ୟର ପ୍ରତିଷ୍ଠା, ସମ୍ମାନ ଓ ସମୃଦ୍ଧି ଦୃଷ୍ଟିରୁ ଇଂରେଜ ସରକାର ଏହାକୁ 'କ' ଶ୍ରେଣୀର ମାନ୍ୟତା ପ୍ରଦାନ କରିଥିଲେ ।

ମୁକ୍ତିର ସ୍ୱପ୍ନରେ ବିଭୋର ଓ ବାସ୍ତବରେ କର୍ମଯୋଗୀ ଆଜନ୍ମ ସଂଗ୍ରାମୀ ସ୍ୱପ୍ନାନନ୍ଦ ପାଣିଗ୍ରାହୀ ଥିଲେ ବହୁମୁଖୀ ପ୍ରତିଭାର ଅଧିକାରୀ । ସେ ଥିଲେ ସମାଜସେବୀ, ରାଜନେତା, ସଂସ୍କାରକ, ସାହିତ୍ୟ ଓ ସଂସ୍କୃତି ଅନୁରାଗୀ ଏବଂ ସତ୍ୟ ଓ ଅହିଂସାରେ ବିଶ୍ୱାସ ରଖିଥିବା ଗାନ୍ଧୀବାଦୀ ଆଦର୍ଶ ପୁରୁଷ । ଏହି ସଂଗ୍ରାମୀ ପୁରୁଷ ୧୯୨୩ ମସିହା ନଭେମ୍ବର ମାସ ୩ ତାରିଖ ଦିନ ବଲାଙ୍ଗିର ଜିଲ୍ଲା ଦେଓଗାଁରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କର ପିତା ଅଚ୍ୟୁତାନନ୍ଦ ପାଣିଗ୍ରାହୀ ଥିଲେ ତତ୍କାଳୀନ ବଲାଙ୍ଗିର-ପାଟଣା ଗଡ଼ଜାତ ରାଜ୍ୟର ଉଚ୍ଚ ପ୍ରାଥମିକ ବିଦ୍ୟାଳୟର ପ୍ରଧାନ ଶିକ୍ଷକ ଓ ମାତାଙ୍କ ନାମ ଥିଲା ସେବତୀ ଦେବୀ ।

ବାଲ୍ୟଶିକ୍ଷା ସମାପ୍ତ ହେବାପରେ ସେ ପୃଥ୍ୱୀରାଜ ହାଇସ୍କୁଲ ବଲାଙ୍ଗିର, ରେଭେନ୍ସା କଲେଜ, କଟକ, ରାଜେନ୍ଦ୍ର କଲେଜ ବଲାଙ୍ଗିରର ପ୍ରଥମ ବ୍ୟାଚ ଛାତ୍ର ଓ କଟକସ୍ଥ ମଧୁସୂଦନ ଆଇନ କଲେଜରେ ଅଧ୍ୟୟନ କରି କୃତିତ୍ୱର ସହିତ ଉତ୍ତୀର୍ଣ୍ଣ ହୋଇଥିଲେ । ସମ୍ବଲପୁରର ଧମା ଓ କଟକ ମୁସିଲିମ୍ ସେମିନାରରେ ବିଜ୍ଞାନ ଶିକ୍ଷକ ରୂପେ ଚାରି ବର୍ଷ ଶିକ୍ଷକତା କରିଥିଲେ । କୃଷକ ଦଳର କାର୍ଯ୍ୟପନ୍ଥାରେ ଆକୃଷ୍ଟ ହୋଇ ସ୍ୱପ୍ନାନନ୍ଦ ପାଣିଗ୍ରାହୀ ମାତୃଭୂମିର ସେବା ନିମନ୍ତେ ନିଜକୁ ସମର୍ପିତ କରିବା ପାଇଁ ସ୍ଥିର କଲେ । ଯୁବ-ଛାତ୍ର ସମାଜ ଏକତ୍ର ବଲାଙ୍ଗିର-ପାଟଣାରେ 'ଛାତ୍ର ସମ୍ମିଳନୀ' ନାମକ ଏକ ଅନୁଷ୍ଠାନ ସ୍ଥାପନ କଲେ । ଏହି ଅନୁଷ୍ଠାନର ଗୁରୁଦାୟିତ୍ୱ ସଭାପତି ପଦ ସ୍ୱପ୍ନାନନ୍ଦ ପାଣିଗ୍ରାହୀଙ୍କୁ ଅର୍ପଣ କରାଯାଇଥିଲା । ସେ ବିଭିନ୍ନ ଶିକ୍ଷାନୁଷ୍ଠାନର ଛାତ୍ରମାନଙ୍କୁ ନେଇ ଇଂରେଜ ଶାସନ ବିରୋଧରେ ସଭା, ସମିତି ଓ ଶୋଭାଯାତ୍ରାମାନ ଆୟୋଜନ କରିଥିଲେ । ସ୍ୱପ୍ନାନନ୍ଦ ପାଣିଗ୍ରାହୀ ବିଦ୍ୟାଳୟ, ମହାବିଦ୍ୟାଳୟ ଓ ଅନ୍ୟାନ୍ୟ ଶିକ୍ଷାନୁଷ୍ଠାନମାନଙ୍କରେ ଛାତ୍ର ସମ୍ମିଳନୀର ଶାଖା ସ୍ଥାପନ କରି ଆନ୍ଦୋଳନକୁ ଅଧିକ ତ୍ୱରାନ୍ୱିତ କରିପାରିଥିଲେ । ଏହି ସମ୍ମିଳନୀରେ ତାଙ୍କର ଘନିଷ୍ଠ ଓ ସକ୍ରିୟ ସହଯୋଗୀମାନେ ଥିଲେ ସୁଦର୍ଶନ ତ୍ରିପାଠୀ, ଲୋକନାଥ ତ୍ରିପାଠୀ, ବିମ୍ବାଧର ମିଶ୍ର, ରଜନୀକାନ୍ତ ଭୋଇ, ଶ୍ୟାମସୁନ୍ଦର ଦାସ ଓ ବଳରାମ ସୁଆସ ପ୍ରଭୃତି । କୃଷକ ଦଳର ରାଜନୈତିକ ସଭାରେ ଯୋଗଦାନ କରି ଓ ବକ୍ତୃତା ଶୁଣିବା ଅପରାଧରେ ପୃଥ୍ୱୀରାଜ ହାଇସ୍କୁଲର କେତେ ଜଣ ଛାତ୍ରଙ୍କୁ ଅର୍ଥଦଣ୍ଡରେ ଦଣ୍ଡିତ କରିବା ପାଇଁ

ସ୍ଥିର କରାଗଲା । ଏହାର ପ୍ରତିବାଦ କରି ଛାତ୍ର ସମ୍ମିଳନୀର ଆହ୍ୱାନରେ ଛାତ୍ର ଆନ୍ଦୋଳନ ଆରମ୍ଭ ହେଲା । ଛାତ୍ରମାନେ ବିଦ୍ୟାଳୟ ବର୍ଜନ କରି ଧର୍ମଘଟ, ସତ୍ୟାଗ୍ରହ ଆରମ୍ଭ କଲେ । ଛାତ୍ର ଆନ୍ଦୋଳନ ପ୍ରତି ରାଜ କର୍ତ୍ତୃପକ୍ଷଙ୍କ ମନୋଭାବ ଅତି କଠୋର ଓ ନିର୍ଦ୍ଦୟ ହୋଇପଡ଼ିଲା । ଏହି ଆନ୍ଦୋଳନରେ ରାଜେନ୍ଦ୍ର କଲେଜ, ସଂସ୍କୃତ ବିଦ୍ୟାଳୟ, ବାଳକ ଓ ବାଳିକା ଉଚ୍ଚ ବିଦ୍ୟାଳୟ, ସମସ୍ତ ପ୍ରାଥମିକ ଏବଂ ମାଧ୍ୟମିକ ବିଦ୍ୟାଳୟମାନଙ୍କର ଛାତ୍ରଛାତ୍ରୀମାନେ ଅଂଶ ଗ୍ରହଣ କରିଥିଲେ । ଛାତ୍ର ଆନ୍ଦୋଳନକୁ ନିର୍ମମ ଭାବରେ ଦମନ କରିବା ପାଇଁ ରାଜଦରବାର ପକ୍ଷରୁ ପ୍ରସ୍ତୁତି ପର୍ବ ଆରମ୍ଭ ହେଲା । ଛାତ୍ର ଆନ୍ଦୋଳନକୁ ସମର୍ଥନ କରି ଗ୍ରାମାଞ୍ଚଳ କୃଷକ ଦଳର କର୍ମୀମାନେ ବଲାଙ୍ଗିର ସହରରେ ଉପସ୍ଥିତ ହେଲେ । କୃଷକ ଦଳର ଉପସଭାପତି ଯୁଧିଷ୍ଠିର ମିଶ୍ର ଓ ଛାତ୍ର କଂଗ୍ରେସ ପ୍ରତିନିଧି ନରସିଂହ ପ୍ରସାଦ ନନ୍ଦଙ୍କ ପରାମର୍ଶ, ପ୍ରେରଣା ଓ ଉତ୍ସାହରେ ଛାତ୍ରମାନେ ତାଙ୍କ ଆନ୍ଦୋଳନକୁ ବଳବତ୍ତର ରଖିଲେ । ପରିସ୍ଥିତିର ଗମ୍ଭୀରତାକୁ ଉପଲବ୍ଧି କରି ଶାସନ ମୁଖ୍ୟ ଲାଲା ରାଜକନବର ଛାତ୍ର ପ୍ରତିନିଧିମାନଙ୍କୁ ଆଲୋଚନା ନିମନ୍ତେ ନିଜ ବାସଭବନକୁ ଆମନ୍ତ୍ରଣ କଲେ । ଆଲୋଚନା ପରେ ଅର୍ଥଦଣ୍ଡ ଓ ଅନ୍ୟାନ୍ୟ କାର୍ଯ୍ୟାନୁଷ୍ଠାନ ଛାତ୍ରମାନଙ୍କ ଉପରୁ ପ୍ରତ୍ୟାହାର କରି ନିଆଗଲା । ଏକ ଭୟାବହ ପରିସ୍ଥିତିକୁ ରାଜଦରବାର ଚତୁରତାର ସହିତ ନିୟନ୍ତ୍ରଣ କରିପାରିଥିଲେ । ଏହି ଆନ୍ଦୋଳନର ସଫଳତା ଦିଗରେ ପ୍ରଚ୍ଛନ୍ନ ଭୂମିକା ଗ୍ରହଣ କରିଥିଲେ ଛାତ୍ର ସମ୍ମିଳନୀର ସଭାପତି ସ୍ୱପ୍ନାନନ୍ଦ ପାଣିଗ୍ରାହୀ । ଛାତ୍ର ସମ୍ମିଳନୀର ବାର୍ଷିକ ଅଧିବେଶନ ବଲାଙ୍ଗିର ସହରରେ ଆରମ୍ଭ ହେଲା । ଏହାର ଆୟୋଜନରେ ସଭାପତି ସ୍ୱପ୍ନାନନ୍ଦ ପାଣିଗ୍ରାହୀଙ୍କୁ ବହୁ କଷ୍ଟ ସ୍ୱୀକାର କରିବାକୁ ପଡ଼ିଥିଲା । ବଲାଙ୍ଗିର-ପାଟଣା, ସୋନପୁର, ବୌଦ୍ଧ, ଖରିଆଳ, ବରପାଲି, ବରଗଡ଼ ଓ ସମ୍ବଲପୁର ପ୍ରଭୃତି ସ୍ଥାନରୁ ଛାତ୍ର ପ୍ରତିନିଧିମାନେ ଆସି ଏହି ଅଧିବେଶନରେ ଯୋଗଦାନ କରିଥିଲେ । ଛାତ୍ରମାନଙ୍କର ଉପସ୍ଥିତିରେ ବଲାଙ୍ଗିର ସହର ଚଳଚଞ୍ଚଳ ହୋଇଉଠିଥିଲା ।

ଛାତ୍ର ସମ୍ମିଳନୀର ବାର୍ଷିକ ଅଧିବେଶନରେ ବିଶିଷ୍ଟ ଅତିଥି ରୂପେ ପ୍ରଦେଶ କଂଗ୍ରେସର ସମାଜବାଦୀ ନେତା ସୁରେନ୍ଦ୍ର ଦ୍ୱିବେଦୀ ଯୋଗ ଦେଇଥିଲେ । ନୟାଗଡ଼ ଦେଶୀୟ ରାଜ୍ୟରେ ପ୍ରଜାମଣ୍ଡଳର ଏକ ଗୁରୁତ୍ୱପୂର୍ଣ୍ଣ ସମ୍ମିଳନୀ ଆୟୋଜିତ ହୋଇଥିଲା । ନୟାଗଡ଼ ପ୍ରଜାମଣ୍ଡଳର ସଭାପତି ଶ୍ରୀଧର ଦାସଙ୍କ ନେତୃତ୍ୱରେ ଏହାର ପ୍ରସ୍ତୁତି ଆରମ୍ଭ ହୋଇଥିଲା । ଓଡ଼ିଶାର ଗଡ଼ଜାତ ପ୍ରଜା ଆନ୍ଦୋଳନର ପ୍ରମୁଖ ସଂଗ୍ରାମୀମାନଙ୍କ ସହିତ ବଲାଙ୍ଗିର-ପାଟଣା ଛାତ୍ର ସମ୍ମିଳନୀର ସଭାପତି ସ୍ୱପ୍ନାନନ୍ଦ ପାଣିଗ୍ରାହୀ ଅଂଶ ଗ୍ରହଣ କରିଥିଲେ । ସ୍ୱପ୍ନାନନ୍ଦ ପାଣିଗ୍ରାହୀ, ନରସିଂହ ପ୍ରସାଦ ନନ୍ଦ, ବିଘ୍ନରାଜ ପଟେଲ ଓ ଅନ୍ୟ କେତେଜଣ ଛାତ୍ରନେତା ଏକ ସମ୍ମିଳନୀ ଆୟୋଜନ କରିବା ନିମନ୍ତେ ବଲାଙ୍ଗିରରୁ କଳାହାଣ୍ଡି ଯାତ୍ରା କଲେ । ଉପରୋକ୍ତ ଛାତ୍ରନେତାମାନଙ୍କ ସହିତ କିଛି ସ୍ଥାନୀୟ ଛାତ୍ର ପ୍ରତିନିଧି ହାତରେ ତ୍ରିରଙ୍ଗା ପତାକା ଧରି ଓ ବିଭିନ୍ନ ଦେଶାତ୍ମବୋଧ ସ୍ଲୋଗାନମାନ ଦେଇ ଭବାନୀପାଟଣା ସହର ଅଭିମୁଖେ ଯାତ୍ରା କଲେ । ଭବାନୀପାଟଣା ସହରର ଅଳ୍ପ ଦୂରରେ ଆନ୍ଦୋଳନକାରୀ ଛାତ୍ରମାନଙ୍କୁ ଆଗକୁ ଅଗ୍ରସର ନହେବା ପାଇଁ କଳାହାଣ୍ଡି ଗଡ଼ଜାତର ପୋଲିସ ବାହିନୀ କଡ଼ା ନିର୍ଦ୍ଦେଶ ଦେଲେ । ବିକ୍ଷୋଭକାରୀ ଛାତ୍ରମାନଙ୍କୁ ସେ ସ୍ଥାନ ପରିତ୍ୟାଗ କରିବା ପାଇଁ ପୋଲିସ୍ କର୍ତ୍ତୃପକ୍ଷ ଆଦେଶ ପ୍ରଦାନ କଲେ । ଦେଶ ଜାତି ପାଇଁ ସଂଗ୍ରାମ କରୁଥିବା ସ୍ୱାଭିମାନୀ ଛାତ୍ରମାନେ ସେହି ସ୍ଥାନରେ ବସି ରହିଲେ । ଛାତ୍ର ସମ୍ମିଳନୀର ସଭାପତି ସ୍ୱପ୍ନାନନ୍ଦ ପାଣିଗ୍ରାହୀ ଓ ତାଙ୍କ ନିକଟରେ ଛାତ୍ରନେତା ବିଜୟରାଜ ପଟେଲ ହାତରେ ତ୍ରିରଙ୍ଗା ପତାକା ଧରି ପ୍ରଥମ ଧାଡ଼ିରେ ଠିଆ ହୋଇଥିଲେ । ପୋଲିସ୍ ବାହିନୀ ସଂଗ୍ରାମୀ ଛାତ୍ରମାନଙ୍କ ହାତରୁ ବଳପୂର୍ବକ ତ୍ରିରଙ୍ଗା ପତାକା ଛଡ଼ାଇ ନେଲେ । ସେମାନଙ୍କୁ ଘୋଷାରି ଘୋଷାରି ସେ ସ୍ଥାନରୁ ସ୍ଥାନାନ୍ତରିତ କଲେ । ପୋଲିସ୍ ସହିତ ଧସ୍ତାଧସ୍ତି ଓ ଲାଠି ମାଡ଼ରେ ସ୍ୱପ୍ନାନନ୍ଦ ଓ ଅନେକ ଛାତ୍ର ଆହତ ହେଲେ । ସ୍ୱପ୍ନାନନ୍ଦ ଓ ନରସିଂହ ପ୍ରସାଦ ନନ୍ଦଙ୍କୁ ପୋଲିସ୍ ବାହିନୀ ଟେକି ନେଇ ପୋଲିସ୍ ଭ୍ୟାନରେ ରଖିଲେ । ସ୍ୱପ୍ନାନନ୍ଦ ପାଣିଗ୍ରାହୀ, ନରସିଂହ ପ୍ରସାଦ ନନ୍ଦ ଓ ବିଘ୍ନରାଜ ପଟେଲଙ୍କୁ କଳାହାଣ୍ଡିରୁ ବହିଷ୍କାର ଆଦେଶ ଓ କଳାହାଣ୍ଡିକୁ ପୁନଃ ପ୍ରବେଶ କରିବା ପାଇଁ ନିଷେଧାଜ୍ଞା ଜାରି କରାଗଲା । ଏହି ତିନି ଜଣ ଛାତ୍ର ନେତାଙ୍କୁ ପୋଲିସ୍ ଗାଡ଼ିରେ ଆଣି କେସିଙ୍ଗାରେ ଛାଡ଼ି ଦିଆଗଲା । ଗାଡ଼ିରେ ଆସୁଥିବା ସମୟରେ ସେମାନେ ଦେଶାତ୍ମବୋଧକ ଗୀତ ଓ ବିପ୍ଳବାତ୍ମକ ଧ୍ୱନିମାନ ଦେଉଥିଲେ । କେସିଙ୍ଗା ଥାନାରେ କିଛିଦିନ ରହିବା ପରେ ଏହି ଛାତ୍ରନେତାମାନଙ୍କୁ ଟ୍ରେନରେ ବସାଇ କଳାହାଣ୍ଡି ସୀମା ପାରି କରି ଦିଆଗଲା । ସ୍ୱପ୍ନାନନ୍ଦ ଓ ନରସିଂହଙ୍କୁ କଳାହାଣ୍ଡିରୁ ବଲାଙ୍ଗିରକୁ ଫେରି ଆସିବା ପରେ ଏଠାରେ ଉତ୍ତେଜନା ଦେଖାଦେଲା । କଳାହାଣ୍ଡିରେ ସେମାନଙ୍କୁ ଦିଆଯାଇଥିବା ନିର୍ଯ୍ୟାତନା ଓ ଅପମାନର କାହାଣୀ ଶୁଣି ସାଧାରଣ ଜନତା, ପ୍ରଜାମଣ୍ଡଳ କର୍ମୀ ଓ ଯୁବ ଛାତ୍ର ସମାଜ ମଧ୍ୟରେ ପ୍ରଚଳିତ ଶାସନ ପ୍ରତି ତୀବ୍ର ଅସନ୍ତୋଷ ପ୍ରକାଶ ପାଇଲା । ବଲାଙ୍ଗିର କଲେଜରେ ଅଧ୍ୟୟନ କରୁଥିବା କଳାହାଣ୍ଡିର ଛାତ୍ରମାନଙ୍କୁ ନେଇ ବଲାଙ୍ଗିର ସାହିତ୍ୟିକ ଓ ସାମାଜିକ କ୍ଲବ୍‌ରେ ଏକ ସଭା ଆୟୋଜନ ହେଲା । ବଲାଙ୍ଗିର-ପାଟଣା ଛାତ୍ର ସମ୍ମିଳନୀର ପ୍ରାଣ ପ୍ରତିଷ୍ଠାତା ସ୍ୱପ୍ନାନନ୍ଦ

ସ୍ୱପ୍ନାନନ୍ଦ ପାଣିଗ୍ରାହୀ, ନରସିଂହ ପ୍ରସାଦ ନନ୍ଦ ଓ ବିଘ୍ନରାଜ ପଟେଲଙ୍କୁ କଳାହାଣ୍ଡିରୁ ବହିଷ୍କାର ଆଦେଶ ଓ କଳାହାଣ୍ଡିକୁ ପୁନଃ ପ୍ରବେଶ କରିବା ପାଇଁ ନିଷେଧାଜ୍ଞା ଜାରି କରାଗଲା । ଏହି ତିନି ଜଣ ଛାତ୍ର ନେତାଙ୍କୁ ପୋଲିସ୍ ଗାଡ଼ିରେ ଆଣି କେସିଙ୍ଗାରେ ଛାଡ଼ି ଦିଆଗଲା । ଗାଡ଼ିରେ ଆସୁଥିବା ସମୟରେ ସେମାନେ ଦେଶାତ୍ମବୋଧକ ଗୀତ ଓ ବିପ୍ଳବାତ୍ମକ ଧ୍ୱନିମାନ ଦେଉଥିଲେ ।

ଏହି ଅଧିବେଶନରେ କଳାହାଣ୍ଡିର ଲଜ୍ୟାଜନକ ଲାଭ କରୁଥିବା ଗଙ୍ଗାଧର ହୋତାଙ୍କ ସଭାପତିତ୍ୱରେ କଳାହାଣ୍ଡି ପାଇଁ 'ଛାତ୍ର କଂଗ୍ରେସ' ନାମରେ ଏକ ଅନୁଷ୍ଠାନ ଗଠନ କରାଗଲା । ଏହି ସଂଗଠନ ପ୍ରତିଷ୍ଠାରେ ସ୍ୱପ୍ନାନନ୍ଦଙ୍କ ପ୍ରମୁଖ ଭୂମିକା ଥିଲା ।

କୃଷକ ଦଳର ଦ୍ୱିତୀୟ ସାଧାରଣ ଅଧିବେଶନ ବଲାଙ୍ଗିରର ପୂର୍ବପଟେ ଥିବା ଗେଟ୍ ସରୋବର ନିକଟବର୍ତ୍ତୀ ବୃହତ୍ ପ୍ରାନ୍ତରରେ ଆରମ୍ଭ ହେଲା । ଏହି ଅଧିବେଶନରେ ଯୋଗଦାନ କରିବା ନିମନ୍ତେ ସମସ୍ତ ଗଡ଼ଜାତ ଅଞ୍ଚଳର ନେତା ଓ କର୍ମୀମାନଙ୍କୁ ନିମନ୍ତ୍ରିତ କରାଯାଇଥିଲା । ଉତ୍କଳ ପ୍ରଦେଶ କଂଗ୍ରେସର ଅନେକ ତୁଙ୍ଗ ନେତା ମଧ୍ୟ ଏହି ସମାରୋହରେ ଅଂଶ ଗ୍ରହଣ କରିଥିଲେ । ଏହି ମହାଅଧିବେଶନର ସମସ୍ତ କାର୍ଯ୍ୟକୁ ଶୃଙ୍ଖଳିତ ଓ ସୁପରିଚାଳିତ କରିବା ଉଦ୍ଦେଶ୍ୟରେ ଯୁବଛାତ୍ରମାନଙ୍କୁ ନେଇ 'ସ୍ୱେଚ୍ଛାସେବକ ଦଳ' ଗଠନ କରାଯାଇଥିଲା । ସ୍ୱପ୍ନାନନ୍ଦ ଛାତ୍ରନେତା ରୂପେ ଏ ଦିଗରେ ତାଙ୍କର ସମସ୍ତ ସହାୟତା ଯୋଗାଇ ଦେଇଥିଲେ । ରାଜଦରବାର ପକ୍ଷରୁ ଗଠନ କରାଯାଇଥିବା ମନ୍ତ୍ରିପରିଷଦରେ କପିଳେଶ୍ୱର ପ୍ରସାଦ ନନ୍ଦ କୃଷକ ଦଳର ପ୍ରତିନିଧି ରୂପେ ଯୋଗ ଦେଇଥିଲେ । ଶିକ୍ଷା, ସ୍ୱାସ୍ଥ୍ୟ, ଯୋଗାଣ ଓ ବଣ୍ଟନ ଦାୟିତ୍ୱ ତାଙ୍କ ହସ୍ତରେ ନ୍ୟସ୍ତ ଥିଲା । ସ୍ୱପ୍ନାନନ୍ଦଙ୍କ ଦ୍ୱାରା ପରିଚାଳିତ ଛାତ୍ର ସମ୍ମିଳନୀର **ସ୍ୱେଚ୍ଛାସେବୀମାନେ ସୁଷମ ବଣ୍ଟନ କାର୍ଯ୍ୟରେ ସହାୟତା ପ୍ରଦାନ କରିଆସିଥିଲେ ।** କୃଷକ ଦଳର ଦ୍ୱିତୀୟ ଅଧିବେଶନ ଉପଲକ୍ଷେ ପ୍ରାୟ ୫୦ ହଜାର ପ୍ରଜାମଣ୍ଡଳ କର୍ମୀମାନଙ୍କର ଏକ ବୃହତ୍ ଶୋଭାଯାତ୍ରା ବଲାଙ୍ଗିର ସହର ପରିକ୍ରମା କଲା । ଶୋଭାଯାତ୍ରାକାରୀମାନେ ବିଭିନ୍ନ ଦେଶାତ୍ମବୋଧକ ସ୍ଲୋଗାନ ଓ ସଂଗୀତ ଗାନ କରି ସମଗ୍ର ବଲାଙ୍ଗିର ସହରରେ ଏକ ରାଜନୈତିକ ଭାବ ପ୍ରବଣତା ସୃଷ୍ଟି କରିବାରେ ସମର୍ଥ ହେଲେ । ସଂଗ୍ରାମୀ ସ୍ୱପ୍ନାନନ୍ଦଙ୍କର ରଚିତ ସଂଗୀତ ସଂଗ୍ରାମୀମାନେ ଗାନ କରି ବଲାଙ୍ଗିର ସହର ପରିକ୍ରମା କରିଥିଲେ । ସେହି ସଂଗୀତର କିଛି ଅଂଶ ଥିଲା-

ଜାଗ୍ରତ ହୁଅ ଜାଗ୍ରତ ହୁଅ ପାଟଣା କୃଷକ ଚାଷୀ
ଜାଗ୍ରତ ଜଗତ ଜାଗ୍ରତ ଭାରତ, ଜାଗ୍ରତ ଉତ୍କଳବାସୀ ।
ଜାଗ୍ରତ ଦଳିତ, ପୀଡ଼ିତ, ପତିତ, ଶୋଷିତ ସକଳ ଆଜି
ଦଳନ ପୀଡ଼ନ ଶୋଷଣ ଶାସନ ଆସନ ପଡ଼ିବ ଭାଜି ।

ସ୍ୱପ୍ନାନନ୍ଦଙ୍କର ସ୍ୱରଚିତ ଏ ସଂଗୀତରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ସେ ଦଳିତ, ନିଷ୍ପେସିତ, ପତିତ ଜନତାଙ୍କ ପାଇଁ ତାଙ୍କ ହୃଦୟ କିପରି ଆନ୍ଦୋଳିତ ହୋଇଉଠିଥିଲା । ସମସ୍ତଙ୍କୁ ସଂଗ୍ରାମ ପ୍ରତି ଜାଗ୍ରତ ଓ ଆକୃଷ୍ଟ କରିବା ପାଇଁ ତାଙ୍କର କାଳଜୟୀ ସଂଗୀତ ଉଦ୍ଦିଷ୍ଟ ଥିଲା । ସମୟକ୍ରମେ ବହୁ ଘାତପ୍ରତିଘାତର ଅବସାନ ଘଟି ଭାରତବର୍ଷ ତା'ର ବହୁ ଆକାଂକ୍ଷିତ ସ୍ୱାଧୀନତା କଲା । ବଲାଙ୍ଗିର ସହରରେ ଉତ୍ସାହ ଓ ଉଦ୍ଦୀପନାର ସହିତ ଏହି ଉତ୍ସବ ପାଳିତ ହେଲା । ବିରାଟ ଯୁବଛାତ୍ର ସମାରୋହରେ ସ୍ଥାନୀୟ ହାଇସ୍କୁଲ ଖେଳ ପଡ଼ିଆରେ ବଲାଙ୍ଗିର-ପାଟଣା ଛାତ୍ର ସମ୍ମିଳନୀର ସଭାପତି ସ୍ୱପ୍ନାନନ୍ଦ ଅଭିବାଦନ ଗ୍ରହଣ କରି ଜାତୀୟ ପତାକା ଉତ୍ତୋଳନ କରିଥିଲେ । ତାଙ୍କଦ୍ୱାରା ରଚିତ 'ସ୍ୱାଧୀନତାର ସମର ତରଙ୍ଗ' ନାମକ ଏକ ନାଟକ କୋଶଳ କଳାମଣ୍ଡଳ ପଡ଼ିଆ ରଙ୍ଗମଞ୍ଚରେ ମଞ୍ଚସ୍ଥ ହୋଇଥିଲା ।

ଦେଶ ସ୍ୱାଧୀନତା ଲାଭ କଲା । ଗଡ଼ଜାତ ମିଶ୍ରଣ ପରେ ବୃହତ୍ତର ଓଡ଼ିଶା ପ୍ରଦେଶ ଗଠନ ହେଲା । ତଥାପି ସ୍ୱପ୍ନାନନ୍ଦଙ୍କର ସଂଗ୍ରାମୀ ଜୀବନର କେବେ ଅବସାନ ହୋଇନଥିଲା । ସେ ଦୁଃସ୍ଥ ଜନତାର ଜନସେବା କାର୍ଯ୍ୟରେ ନିଜକୁ ନିୟୋଜିତ କରିଥିଲେ । ଶିକ୍ଷା, ସଂସ୍କାର ଓ ସମାଜ ସେବା କ୍ଷେତ୍ରରେ ତାଙ୍କର ଅବଦାନ ଅତୁଳନୀୟ ।

୧୯୫୪ରୁ ୧୯୬୦ ପର୍ଯ୍ୟନ୍ତ ରାଜ୍ୟସଭାର ସଦସ୍ୟ ରହି ଓଡ଼ିଶାର ଦାବିକୁ ସେ ଉପଯୁକ୍ତ ମାର୍ଗରେ ଉପସ୍ଥାପନ କରି ନିଜକୁ ଜଣେ ଅଭିଜ୍ଞ ଓ ସଚ୍ଚରିତ୍ର ରାଜନେତାର ପରିଚୟ ଦେଇଥିଲେ । ଦୀର୍ଘଦିନ ଧରି ସେ ବଲାଙ୍ଗିର କୋଅପରିଟିଭ୍ ବ୍ୟାଙ୍କର ଉପସଭାପତି ପଦ ମଣ୍ଡନ କରି ଚାଷୀ, ମୂଲିଆ ଓ ଦରିଦ୍ର ଲୋକମାନଙ୍କ ସେବାରେ କେବେ ଅବହେଳା କରିନଥିଲେ । ଜଣେ ସତ୍ୟନିଷ୍ଠ ନିର୍ଭୀକ ସ୍ୱାଧୀନତା ସଂଗ୍ରାମୀ ରୂପେ ଓଡ଼ିଶା ସରକାରଙ୍କଦ୍ୱାରା ସେ ସ୍ୱୀକୃତି ଓ ସମ୍ମାନ ଲାଭ କରିଥିଲେ । ଜଣେ ସୁଲେଖକ ଭାବରେ ତାଙ୍କର ଯଥେଷ୍ଟ ସୁନାମ ରହିଛି । ତାଙ୍କ ରଚିତ 'ସ୍ୱାଧୀନତା ସଂଗ୍ରାମର ଇତି କଥା' ଏକ ତଥ୍ୟ ସମ୍ବଳିତ, ପ୍ରାମାଣିକ, ଅଭିଜ୍ଞତା ଓ ଅନୁଭବକୁ ନେଇ ସମୃଦ୍ଧ ବଲାଙ୍ଗିର-ପାଟଣା ଓ ସୋନପୁର ଗଡ଼ଜାତ ପ୍ରଜା ଆନ୍ଦୋଳନର ରୋମାଞ୍ଚକର ଘଟଣାବଳୀ ଉକ୍ତ ପୁସ୍ତକରେ ସ୍ଥାନିତ ହୋଇଅଛି । ୨୦୦୩ ମସିହା ଜିଲ୍ଲାସ୍ତରୀୟ ଉତ୍କଳ ଦିବସ ବଲାଙ୍ଗିର ଗାନ୍ଧୀଭବନ ପାଠାଗାର ପରିସରରେ ଅନୁଷ୍ଠିତ ହୋଇଥିଲା । ଉକ୍ତ ସଭାରେ ସେ ଜଣେ ସମ୍ମାନିତ ଅତିଥି ଭାବରେ ଯୋଗଦାନ କରିଥିଲେ । ଉକ୍ତ ସଭାରେ ମୁଁ (ଲେଖକ) ତାଙ୍କର ଦେଶ ଜାତି ଗଠନ ସଂପର୍କରେ ସାର ଗର୍ଭକ ହୃଦୟସ୍ପର୍ଶୀ ଓ ମାର୍ମିକ ବକ୍ତୃତା ଶୁଣିବାରେ ସୌଭାଗ୍ୟ ଲାଭ କରିଥିଲି । ଏହି ବର୍ଷୀୟାନ ସ୍ୱାଧୀନତା ସଂଗ୍ରାମୀଙ୍କର ବଲାଙ୍ଗିରର ରୁଗୁଡ଼ିପଡ଼ାସ୍ଥ ନିଜ ବାସ ଭବନରେ ୮୪ ବର୍ଷ ବୟସରେ ୨୦୦୭ ମସିହା ନଭେମ୍ବର ୭ ତାରିଖ ଦିନ ଦେହାନ୍ତ ହୋଇଥିଲା । ସେ ଥିଲେ ବଲାଙ୍ଗିରର ଗର୍ବ ଓ ଗୌରବ ଏବଂ ଉତ୍କଳ ଜନନୀର ଜଣେ କୃତି ସନ୍ତାନ । ଆଜିର ଯୁବ ସମାଜ ତାଙ୍କ ପ୍ରଦର୍ଶିତ ପଥ ଅନୁସରଣ କରିପାରିଲେ ଏହା ହେବ ତାଙ୍କ ସଂଗ୍ରାମୀ ଜୀବନ ପ୍ରତି ଯଥାର୍ଥ ସମ୍ମାନ ଓ ଶ୍ରଦ୍ଧାଞ୍ଜଳି ।

ଇତିହାସ ବିଭାଗ
ସନାତନ ହରିଚନ୍ଦନ ମହାବିଦ୍ୟାଳୟ
ମଦନପୁର, ଖୋର୍ଦ୍ଧା-୭୫୨୦୫୪

# ଚିଲିକାର ଚିତ୍ତାକର୍ଷକ ଡଲ୍‌ଫିନ୍

ପ୍ରଫେସର ପ୍ରଫୁଲ୍ଲ କୁମାର ମହାନ୍ତି
ଡକ୍ଟର ସଂଜୟ ନାରାୟଣ ଓତା

**ପ୍ରକୃତିର ବୈଶିଷ୍ଟ୍ୟ ଚିଲିକା**

ପ୍ରାକୃତିକ ସୌନ୍ଦର୍ଯ୍ୟରେ ଭର୍ତ୍ତି ଚିଲିକା ଓଡ଼ିଶାର ଏକ ମୁଖ୍ୟ ପର୍ଯ୍ୟଟନ ସ୍ଥଳୀ । ଚିଲିକା ବକ୍ଷର ଗୋଟିଏ ପଟେ ସମୁଦ୍ର ଓ ଅନ୍ୟପଟେ ଘେରି ରହିଛି ଓଡ଼ିଶା ରାଜ୍ୟର ତିନୋଟି ଜିଲ୍ଲା ଯଥା- ପୁରୀ, ଖୋର୍ଦ୍ଧା ଓ ଗଞ୍ଜାମ । ଚିଲିକା ଲଗୁନ ୧୯°୨୮' ଓ ୧୯°୫୪' ଉତ୍ତର ଅକ୍ଷାଂଶ (Latitude) ଓ ୮୫°୫' ଓ ୮୫°୩୮' ପୂର୍ବ ଦ୍ରାଘିମା (Longitude)ରେ ଅବସ୍ଥିତ । ଚିଲିକା ଲଗୁନରେ କେତେକ କ୍ଷୁଦ୍ରକାୟ ଓ ବୃହତ୍‌କାୟ ପାହାଡ଼ ଦେଖାଯାଏ । ସେଥିମଧ୍ୟରୁ କେତେକ ଚିଲିକାର ନୀଳ ଜଳରେ ବୁଡ଼ି ରହିଥାଏ । ଜଳର ଉପରି ଭାଗରେ ଆଉ କିଛି ପାହାଡ଼ର କେତେକାଂଶ ପରିଦୃଶ୍ୟମାନ ହେଉଥାଏ । ଚିଲିକା ଜଳର ଗଭୀରତା ୦.୩୮ ମିଟରରୁ ୪.୨ ମିଟର । ଗ୍ରୀଷ୍ମଋତୁରେ ୭୯୦ ବର୍ଗ କି.ମି. ଓ ବର୍ଷା ଋତୁରେ ୧୧୬୫ ବର୍ଗ କି.ମି. ସ୍ଥାନ ପର୍ଯ୍ୟନ୍ତ ଏହାର ଜଳ ପ୍ରସାରିତ ହୋଇଥାଏ । ଖାଦ୍ୟ ଓ ପ୍ରଜନନ ପାଇଁ ଶୀତ ଋତୁରେ ଏଠାରେ ସବୁଠାରୁ ଅଧିକ ବିଦେଶୀ ପକ୍ଷୀଙ୍କ ସମାଗମ ହୁଏ । ବନ୍ୟଜନ୍ତୁ (ସୁରକ୍ଷା) ଆଇନ ୧୯୮୭ ଅନୁସାରେ ଚିଲିକା ଲଗୁନରେ ଥିବା ନଳବନ ଦ୍ୱୀପକୁ ପକ୍ଷୀମାନଙ୍କର ସଂରକ୍ଷଣ ପାଇଁ ଏହାକୁ ଅଭୟାରଣ୍ୟ (Sanctury) ବୋଲି ଘୋଷଣା କରାଯାଇଛି । **କାଳିଜାଈ ପାହାଡ଼ରେ ବିଦେଶୀ ପକ୍ଷୀଙ୍କ ସମାଗମ ଓ ସାତପଡ଼ାର ଡଲଫିନ୍ ପାଇଁ ଚିଲିକା ପ୍ରସିଦ୍ଧିଲାଭ କରିଛି । ଏହାଛଡ଼ା ମାଛ ଚାଷ ଓ ଚିଙ୍ଗୁଡ଼ି ଚାଷ ପାଇଁ ଏହି ଅଞ୍ଚଳ ସମଗ୍ର ଓଡ଼ିଶା କାହିଁକି ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ବେଶ୍ ଆଦୃତ ।**



ସମଗ୍ର ବିଶ୍ୱରେ ଚିଲିକାର ସାତପଡ଼ା ଡଲଫିନ୍‌ମାନଙ୍କ ପାଇଁ ଚର୍ଚ୍ଚାର ବିଷୟ ହୋଇଛି । ଡଲଫିନ୍‌ର ଉପସ୍ଥିତି ଚିଲିକା ଲଗୁନର ସୌନ୍ଦର୍ଯ୍ୟକୁ ଅଧିକ ଆକର୍ଷଣୀୟ କରିଛି । ବିଶ୍ୱରେ ମୋଟ ୯୦୦ରୁ ୧୦୦୦ ମଧ୍ୟରେ ଡଲଫିନ୍ ଥିବାବେଳେ ଚିଲିକା ଲଗୁନରେ ବିଶ୍ୱର ସର୍ବାଧିକ ୧୩୮ଟି ବିରଳ ପ୍ରଜାତିର ଇରାୱାଡ଼ି ଡଲଫିନ୍ ଅଛନ୍ତି । ଓଡ଼ିଆ ଭାଷାରେ ଡଲଫିନ୍‌କୁ 'ଶିଶୁମାର' କୁହାଯାଏ । ଚିଲିକାରେ ସ୍ଥାନୀୟ ଭାଷାରେ ଇରାୱାଡ଼ି ଡଲଫିନ୍ 'ଭୁଆଷୁଣୀ ମଗର' ନାମରେ ଜଣାଶୁଣା । ଏମାନେ ସ୍ତନ୍ୟପାୟୀ ଜଳଚର ଜୀବ । ଡଲଫିନ୍ ବେଶ୍ ବୁଦ୍ଧିମାନ ଓ କୌତୁହଳପୂର୍ଣ୍ଣ କ୍ରୀଡ଼ା ଦେଖାଇ ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିଥାଏ । ଜୈବବିବିଧତାକୁ ତାର ପ୍ରାକୃତିକ ପରିବେଶରେ ସଂରକ୍ଷିତ କରିବା ଉଦ୍ଦେଶ୍ୟରେ ତଥା ବୈଜ୍ଞାନିକ ଅନୁସନ୍ଧାନ ଓ ଚିଲିକାର ବିକାଶ ପାଇଁ ୧୯୯୨ ମସିହାରେ ଚିଲିକା ଉନ୍ନୟନ କର୍ତ୍ତୃପକ୍ଷ ବା ସିଡିଏ ସୃଷ୍ଟି କରାଯାଇଛି ।

**ଡଲଫିନ୍ : ଚିଲିକାର ଏକ ଅନନ୍ୟ ପ୍ରାଣୀ**

ତିମି (ହ୍ୱେଲ) ଓ ପରପଏଜ୍ (Porpoise)ମାନଙ୍କ ପରି ଡଲଫିନ୍ ଏକ ଜଳଚର ସ୍ତନ୍ୟପାୟୀ ଜୀବ । ଡଲଫିନ୍, ହ୍ୱେଲ ଓ ପରପଏଜ୍ ଆଦି ସିଟାସିଆନ ବର୍ଗର । ସେମାନେ ଦେଖିବାକୁ ବଡ଼ ବଡ଼ ମାଛ ସଦୃଶ । ବିଲେଇ, କୁକୁର, ଛେଳି, ଗାଈ, ବାଘ, ସିଂହ, ମାଙ୍କଡ଼ ଓ ମଣିଷ ପରି ସେମାନେ ଶାବକ ପ୍ରସବ କରନ୍ତି ଓ ପ୍ରସବ ହେଲା ପରେ ଶାବକମାନେ ମା'ଠାରୁ କ୍ଷୀର ପାନ କରନ୍ତି । ଆକର୍ଷଣୀୟ ଶାରୀରିକ ଚେହେରା ମନୁଷ୍ୟକୁ ଅନିଷ୍ଟ କରୁନଥିବା ପ୍ରକୃତି ଓ କୌତୁକପ୍ରଦ ଖେଳ ଦେଖାଉଥିବା ଜୀବ ହୋଇଥିବାରୁ ସେମାନେ ମଣିଷକୁ ଆକୃଷ୍ଟ କରିଥାନ୍ତି । ଡଲଫିନ୍ ସର୍ବଦା ଦଳ ଦଳ ହୋଇ ଦେଖିବାକୁ ମିଳନ୍ତି । ସେମାନଙ୍କ ପାଟିରେ ଗୁଡ଼ାଏ ଛୋଟ ଛୋଟ ଦାନ୍ତ ଥାଏ । ଅଧିକାଂଶ ସମୟରେ ଜଳ ଉପରକୁ ଥଣ୍ଟ ଭଳି ଲମ୍ବିତ ନାସା ଓ ବକ୍ର ପୃଷ୍ଠପକ୍ଷ ଦୃଶ୍ୟମାନ ହେଉଥାଏ । ସେମାନଙ୍କ ଦେହର ଲମ୍ବ ୧ ମିଟରଠାରୁ ଆରମ୍ଭ କରି ୨.୫ ମିଟର ପର୍ଯ୍ୟନ୍ତ ଦେଖିବାକୁ ମିଳନ୍ତି । ବର୍ତ୍ତମାନ ଅନ୍ୟ ଯେକୌଣସି ଦେଶର ନଦୀ ଓ ହ୍ରଦ ତୁଳନାରେ ଭାରତର ଚିଲିକା ଲଗୁନରେ ସର୍ବାଧିକ ସଂଖ୍ୟକ ଇରାୱାଡ଼ି ଡଲଫିନ୍ ଅଛନ୍ତି । ଏପରିକି ଇରାୱାଡ଼ିର ନାମ ଉଦ୍ଧୃତ ହୋଇଥିବା ମିଆନ୍‌ମାର ଦେଶର ନଦୀ

ଆୟେୟାରୱାଡ଼ୀରେ ମଧ୍ୟ ସେମାନଙ୍କର ସଂଖ୍ୟା କମ୍ । ଚିଲିକାରେ ଡଲଫିନ୍ ସଂରକ୍ଷଣ ଓ ସେମାନଙ୍କ ସଂଖ୍ୟାରେ କିଛି ମାତ୍ରାରେ ବୃଦ୍ଧି ନିଶ୍ଚିତ ରୂପେ ଏକ ଶୁଭ ଖବର । ଏପରିକି ବିଭିନ୍ନ ଦେଶ ଯଥା- ମିଆନମାର, ଇଣ୍ଡୋନେସିଆ, କାମ୍ବୋଡ଼ିଆ-ଭିଏତ୍‌ନାମ, ଫିଲିପାଇନ୍‌ସ, ଥାଇଲାଣ୍ଡ ଓ ଅଷ୍ଟ୍ରେଲିଆର ହ୍ରଦ ଓ ନଦୀମାନଙ୍କରେ ୧୦୦ରୁ କମ୍ ସଂଖ୍ୟକ ଇରାୱାଡ଼ି ଡଲଫିନ୍ ଅଛନ୍ତି (ସାରଣୀ-୧) । ବାର୍ଷିକ ଡଲଫିନ୍ ସଂଖ୍ୟା ଗଣନାକୁ ଅନୁଧ୍ୟାନ କଲେ ଜଣାଯାଏ, ଚିଲିକାର ଜଳ ସେମାନଙ୍କର ବାସୋପଯୋଗୀ । ଇରାୱାଡ଼ି ଡଲଫିନ୍‌ର ବୈଜ୍ଞାନିକ ନାମ Orcaella brevirostris ସେମାନେ ସଙ୍କାକୁଳ ପ୍ରଜାତି (Endangered species) ହୋଇଥିବାରୁ ୨୦୦୪ ମସିହାରେ ଆନ୍ତର୍ଜାତିକ ସ୍ତରରେ ଏମାନଙ୍କ ବ୍ୟବସାୟିକ କାରବାର ଉପରେ କଟକଣା ଲାଗୁ କରାଯାଇଛି । ସମଗ୍ର ପୃଥିବୀରେ ସେମାନଙ୍କ ସଂଖ୍ୟା ଏକ ହଜାରରୁ କମ୍ ବୋଲି ଆକଳନ କରାଯାଇଛି । ଡଲଫିନ୍‌ର ସୁରକ୍ଷା ପାଇଁ ବନ୍ୟଜନ୍ତୁ ଆଇନ ୧୯୭୨କୁ ଗ୍ରହଣ କରାଯାଇଛି । ଯେହେତୁ ଏହି ସ୍ତନ୍ୟପାୟୀ ପ୍ରାଣୀଟି ସଙ୍କାକୁଳ ପ୍ରଜାତି ଭାବରେ ବିଚାର କରାଯାଏ ସେଥିପାଇଁ ଚିଲିକାରେ ସେମାନଙ୍କର ସୁରକ୍ଷା ଓ ସଂରକ୍ଷଣ ଏକ ତାତ୍ପର୍ଯ୍ୟପୂର୍ଣ୍ଣ ବିଷୟ ।

**ସାରଣୀ-୧ : ବିଶ୍ୱରେ ଡଲଫିନ୍‌ମାନଙ୍କ ସଂଖ୍ୟା**

| କ୍ର.ନଂ. | ଦେଶ | ଡଲଫିନ୍‌ର ସଂଖ୍ୟା | ମୃତ୍ୟୁହାର (ଶତକଡ଼ା) |
|---|---|---|---|
| ୧. | ମିଆନମାର | ୭୨ | ୮ |
| ୨. | ଇଣ୍ଡୋନେସିଆ | ୭୦ | ୦୬-୦୮ |
| ୩. | କାମ୍ବୋଡ଼ିଆ-ଭିଏତ୍‌ନାମ | ୯୫ | ୧୫ |
| ୪. | ଫିଲିପାଇନ୍‌ସ | ୭୭ | ୬ |
| ୫. | ଥାଇଲାଣ୍ଡ | ୨୪ | ୮ |
| ୬. | ଅଷ୍ଟ୍ରେଲିଆ | ୧୦୦ରୁ କମ୍ | -- |

**ଇରାୱାଡ଼ି ଡଲଫିନ୍**

ଡଲଫିନ୍ ଛୋଟଦାନ୍ତିଆ ହେଉଛି ତିମି ବର୍ଗର ଓ ସେମାନଙ୍କର ପ୍ରସାରିତ ଅଣ୍ଡ ଭଳି ଥୋମଣି ଥାଏ । ସାଧାରଣ ଡଲଫିନ୍ ଓ ବୋତଲନାକ ଡଲଫିନ୍ ସମସ୍ତଙ୍କ ନିକଟରେ ବେଶ୍ ପରିଚିତ । ସାଧାରଣ ଡଲଫିନ୍‌ର ଲମ୍ବ ୨.୫ ମିଟର । ପୃଷ୍ଠଭାଗର ବର୍ଣ୍ଣ କଳା ଓ ପେଟତଳ ଭାଗ ଧଳା । ସେମାନେ ଦଳ ଦଳ ହୋଇ ସମୁଦ୍ରରେ ଦେଖିବାକୁ ମିଳନ୍ତି ଓ ଘଣ୍ଟାକୁ ୪୦ କି.ମି. ବେଗରେ ପହଁରନ୍ତି । ଦେହର ବର୍ଣ୍ଣ ଓ ଶାରୀରିକ ଆକୃତିକୁ ନେଇ ସେମାନେ ବିଭିନ୍ନ ପ୍ରକାରର (ସାରଣୀ-୨) । କିନ୍ତୁ ଏମାନଙ୍କଠାରୁ ଇରାୱାଡ଼ି ଡଲଫିନ୍‌ର ରଙ୍ଗ ଅଲଗା । ଇରାୱାଡ଼ି ଡଲଫିନ୍‌ର ରଙ୍ଗ ଫିକା ଧୂସର ବର୍ଣ୍ଣ । ସେମାନେ ଦୁଇ ମିଟରରୁ ଉର୍ଦ୍ଧ୍ୱ ପର୍ଯ୍ୟନ୍ତ ଲମ୍ବରେ ବଢ଼ିଥାନ୍ତି । ଅନେକ ସମୟରେ ଜଳ ଉପରକୁ ସେମାନଙ୍କର ପ୍ରସାରିତ ନାସା ଓ ଥୋମଣି, ଚକ୍ଷୁ, ପୃଷ୍ଠପକ୍ଷ ଓ ଆହୁଲା ପରି କାମ କରୁଥିବା ଆଗଗୋଡ଼ ଦୃଶ୍ୟମାନ ହେଉଥାଏ । ତିନିରୁ ଚାରିବର୍ଷ ମଧ୍ୟରେ ଡଲଫିନ ପ୍ରଜନନକ୍ଷମ ହୋଇଥାଏ । ମାଈ ଡଲଫିନ୍ ଦୁଇରୁ ତିନିବର୍ଷ ଅନ୍ତରରେ ଗୋଟିଏ ଶାବକ ଜନ୍ମ ଦେଇଥାଏ । ଲମ୍ବରେ ଅଣ୍ଡିରା ଡଲଫିନ୍ ୨.୫ ମିଟର ଓ ମାଈ ଡଲଫିନ୍ ୨.୩ ମିଟର ପର୍ଯ୍ୟନ୍ତ ବଢ଼ିଥାଏ । ସେମାନେ ଦଳ ହୋଇ ଦେଖାଯାଆନ୍ତି ଓ ରାତିରେ ଅଧିକ ସକ୍ରିୟ ଥାଆନ୍ତି । ସେମାନଙ୍କର ଗୋଟିଏ ପୃଷ୍ଠପକ୍ଷ, ଗୋଟିଏ ଲାଞ୍ଜପକ୍ଷ ଓ ଗୋଟିଏ ହଳ ବକ୍ଷପକ୍ଷ ଥାଏ । ଆଗଗୋଡ଼ ଦୁଇଟି ଆହୁଲା ପରି ପହଁରିବାରେ ସାହାଯ୍ୟ କରେ । ପଛଗୋଡ଼ ନଥାଏ । ଲାଞ୍ଜରେ ଲାଞ୍ଜପକ୍ଷ ଥାଏ ଯାହା ପହଁରିବା ସମୟରେ ଦିଗ ନିୟନ୍ତ୍ରଣ କରେ । ଡଲଫିନ୍‌ର ଚର୍ମତଳେ ମୋଟା ପରସ୍ତର ଚର୍ବିଥାଏ ଯାହାକୁ ବ୍ଲବର କୁହାଯାଏ । ସେମାନଙ୍କର ବହିଃକର୍ଣ୍ଣ ଓ ବାହ୍ୟ ଜନନାଙ୍ଗ ନାହିଁ । ଜଳରେ ବାସହେତୁ କାଳକ୍ରମେ ସେସବୁ ଲୋପ ପାଇଅଛି । ଡଲଫିନ୍‌ର ଦାନ୍ତ ଶଙ୍କୁାକାର ଓ ପାଟିରେ ପ୍ରାୟ ୧୬୦ରୁ ୨୦୦ ଯାଏଁ ଦାନ୍ତ ଥାଏ । ସେମାନେ ପରପଏଜମାନଙ୍କଠାରୁ ସାଧାରଣତଃ ଆକାରରେ ବଡ଼ । ଡଲଫିନ୍‌ମାନଙ୍କର ପ୍ରସାରିତ ଥୋମଣି ଚେପ୍‌ଟା । ସେମାନେ ସଂଘବଦ୍ଧ ଭାବେ ମତ୍ସ୍ୟ ଶିକାର କରନ୍ତି ଓ ଶିକାର ସମୟରେ ପ୍ରାୟ କିଛି ସଂଖ୍ୟାରେ ଡଲଫିନ୍ ମାଛ ପଲଙ୍କୁ ଘେରି ଯାଆନ୍ତି । ପ୍ରାୟ ପାଞ୍ଚରୁ ଛଅ ମିନିଟ୍ କାଳ ପାଣି ଭିତରେ ବୁଡ଼ି ରହିପାରନ୍ତି, ତା'ପରେ ଶ୍ୱାସକ୍ରିୟା ପାଇଁ ଥୋମଣିକୁ ସେମାନେ ପାଣି ଉପରକୁ ଟେକନ୍ତି । ଡଲଫିନ୍ ସମୁଦ୍ରରେ ପ୍ରାୟ ୧୦୦୦ ଫୁଟ ଗଭୀର ପର୍ଯ୍ୟନ୍ତ ବୁଡ଼ିପାରେ ଓ ପୁନଶ୍ଚ ସଙ୍ଗେ ସଙ୍ଗେ ଉପରକୁ ଉଠିଆସେ । ଡଲଫିନ୍ ଜଳ-ସମତଳ ତଳକୁ ଶରୀର ରଖି ନ ପହଁରି ନିଶ୍ଚଳ ଭାବରେ ଭାସେ, ପ୍ରତି ୧୫ରୁ ୩୦ ସେକେଣ୍ଡରେ ଥରେ ଆଖି ଫିଟାଏ ଓ ପ୍ରତି ଅଧ ମିନିଟ୍‌ରେ ଲାଞ୍ଜପକ୍ଷ ଦ୍ୱାରା ଧୀରେ ଆହୁଲା ମାରେ । ଏମାନେ ଏହି ଅବସ୍ଥାରେ କ୍ଲାନ୍ତ ଦୂର କରିଥାଆନ୍ତି । ଡଲଫିନ୍ ଦ୍ରୁତ ବେଗରେ ପହଁରିପାରନ୍ତି । ସେମାନେ ଧ୍ୱନି କରି ଗଭୀର ଜଳରେ ଥିବା ମଣିଷକୁ ଜାଣିପାରନ୍ତି । ଏହାଦ୍ୱାରା ଖାଦ୍ୟ ଓ ଶତ୍ରୁକୁ ଠାବ କରିପାରନ୍ତି ।

**ସାରଣୀ-୨ : ବିଭିନ୍ନ ପ୍ରକାରର ଡଲଫିନ୍ (ଶିଶୁମାର)**

| କ୍ର.ନଂ. | ସାଧାରଣ ନାମ | ବୈଜ୍ଞାନିକ ନାମ |
|---|---|---|
| ୧. | ସାଧାରଣ ଡଲଫିନ୍ (Common dolphin) | Delphinus delphis |
| ୨. | ଲୋହିତ ସାଗର ବୋତଲ ନାକ ଡଲଫିନ୍ (Red sea bottle nosed dolphin) | Tursiops aduncus |

| | | |
|---|---|---|
| ୩. | ବୋତଲ ନାକ ଡଲଫିନ୍ (Bottle nosed dolphin) | Tursiops Truncatus |
| ୪. | ଧଳାନାକ ଡଲଫିନ୍ (White nosed dolphin) | Lagenorhynchus albirostris |
| ୫. | ଗାରଗାରିଆ ଡଲଫିନ୍ (Striped dolphin) | Stenella dubia |
| ୬. | ଦନ୍ଥଡ଼ା ଦାନ୍ତି ଡଲଫିନ୍ (Rough toothed dolphin) | Steno rostratus |
| ୭. | ରିସୋ ଡଲଫିନ୍ (Risso's dolphin) | Grampus griseus |
| ୮. | ଇରାୱାଡ଼ି ଡଲଫିନ୍ (Irrawaddy dolphin) | Orcaella brevirostris |
| ୯. | ସୀସକ ବର୍ଣ୍ଣ ଡଲଫିନ୍ (Plumbeous dolphin) | Sotalia phumbea cuvier |
| ୧୦. | ଭାରତୀୟ ଓସାରିଆ ଥଣ୍ଟ ଡଲଫିନ୍ (Indian Broad Beaked dolphin) | Lagenorhynchus electra gray |
| ୧୧. | ଗଂଗା ଡଲଫିନ୍ (Gangetic dolphin) | Plantanista gangetica |

**ବୋଟ ଯାତାୟାତ ନିମନ୍ତେ ରହିଥିବା ନିୟମାବଳୀ**

୧. ଡଲଫିନ୍‌ମାନଙ୍କଠାରୁ ଅତିକମ୍‌ରେ ୩୦୦ ମିଟର ଦୂରତାରେ ବୋଟଗୁଡ଼ିକ ଯାତାୟାତ କରିବା ।

୨. ସେହିପରି ପର୍ଯ୍ୟଟକମାନଙ୍କୁ ନେଇଯାଉଥିବା ବୋଟ ଅତିକମ୍‌ରେ ୬୦ ମିଟର ଦୂରତା ରକ୍ଷା କରିବା ଓ ଏକକାଳୀନ ଡଲଫିନ୍ ଦେଖୁଥିବା ସ୍ଥାନରେ ପାଞ୍ଚରୁ ଅଧିକ ବୋଟ ନ ରହିବା ।



ଚିତ୍ର-୨

୩. ଡଲଫିନ୍‌ମାନେ ଯାଉଥିବା ଦିଗର ସମ୍ମୁଖ ଭାଗରେ ଓ ପଛଭାଗରେ ବୋଟ ଚାଳନା ନ କରିବା (ଚିତ୍ର-୨) ।

୪. ପର୍ଯ୍ୟଟକଙ୍କୁ ନେଇଯାଉଥିବା ବୋଟଗୁଡ଼ିକରେ ଡଲଫିନ୍ ଓ ଏହାର ସଂରକ୍ଷଣ ସମ୍ବନ୍ଧରେ ପ୍ରଶିକ୍ଷଣ ପାଇଥିବା ଗାଇଡ୍ ବୋଟରେ ରହିବା ଓ ପର୍ଯ୍ୟଟକଙ୍କୁ ଡଲଫିନ୍‌ର ସୁରକ୍ଷା ଓ ସଂରକ୍ଷଣ ସମ୍ବନ୍ଧରେ ସଚେତନ କରାଇବା ।

**ଚିଲିକାରେ ଡଲଫିନ୍‌ମାନଙ୍କ ସଂଖ୍ୟା ଗଣନା**

ଚିଲିକାରେ ଇରାୱାଡ଼ି ଡଲଫିନ୍‌ର ଉପସ୍ଥିତି ପ୍ରଥମ ଥର ପାଇଁ ୧୯୧୫ ମସିହାରେ ଜଣାପଡ଼ିଥିଲା । ୧୯୯୨ ମସିହାରେ ୨୦ଟି ଡଲଫିନ୍ ଚିଲିକା ମଧ୍ୟରେ ଥିବାର ଚିହ୍ନଟ କରାଯାଇଥିଲା । ୨୦୦୨ ମସିହାରେ ନିର୍ଦ୍ଦିଷ୍ଟ ପ୍ରଣାଳୀରେ ପର୍ଯ୍ୟବେକ୍ଷଣ କରାଯାଇ ସେମାନଙ୍କ ସଂଖ୍ୟା ୯୮ ବୋଲି ଜଣାପଡ଼ିଥିଲା । ବର୍ତ୍ତମାନ ସମଗ୍ର ପୃଥିବୀରେ ମୋଟ ୧୦୦୦ରୁ କମ୍ ସଂଖ୍ୟକ ଡଲଫିନ୍ ଥିବାବେଳେ ଚିଲିକା ହ୍ରଦରେ ବିଶ୍ୱର ସର୍ବାଧିକ ୧୩୮ଟି ବିରଳ ପ୍ରଜାତିର ଇରାୱାଡ଼ି ଡଲଫିନ ଅଛନ୍ତି । ୨୦୦୮ ମସିହା ଡଲଫିନ୍ ଗଣନା ପରେ ଜଣାପଡ଼ିଛି ଯେ,

ଚିଲିକାରେ ୨୦୦୬ରେ ୧୩୧ ଏବଂ ୨୦୦୭ରେ ୧୩୫ ଡଲଫିନ୍ ଥିବାବେଳେ, ବର୍ତ୍ତମାନ ସେମାନଙ୍କ ସଂଖ୍ୟା ୧୩୮ରେ ପହଞ୍ଚିଲାଣି ।

ଗତ ବର୍ଷ ତୁଳନାରେ ଚଳିତ ବର୍ଷ ଇରାୱାଡ଼ି ଡଲଫିନ୍ ସଂଖ୍ୟାରେ ବୃଦ୍ଧି ଘଟିଛି । ଚିଲିକାରେ ୨୦୦୬ରେ ୧୩୧ ଏବଂ ୨୦୦୭ରେ ୧୩୫ ଡଲଫିନ୍ ଥିବାବେଳେ, ବର୍ତ୍ତମାନ ସେମାନଙ୍କ ସଂଖ୍ୟା ୧୩୮ରେ ପହଞ୍ଚିଲାଣି । ସିଡ଼ିଏ ଏବଂ ଦିଲ୍ଲୀ ଆଇ.ଆଇ.ଟି.ର ସହଯୋଗରେ ଜାପାନର ବୈଜ୍ଞାନିକମାନେ ବୈଦ୍ୟୁତିକ ସମ୍ବେଦନକାରୀ (Electronic Sensor) ମାଧ୍ୟମରେ ଏହି ଗଣନା କରିଥିଲେ (ଚିତ୍ର-୩) । ଯାହା ଜଣାଯାଏ, ସେମାନଙ୍କ ସଂଖ୍ୟା ଧୀରେ ଧୀରେ ବଢ଼ିବାରେ ଲାଗିଛି । ଯାହାଫଳରେ ସେମାନଙ୍କର ସମ୍ପୂର୍ଣ୍ଣ ବିଲୋପନରୁ ରକ୍ଷା କରାଯାଇପାରିବାର ଆଶାର ସଞ୍ଚାର ହୋଇଛି । ଚିଲିକାର ଜଳ ଓ ପରିବେଶ ସେମାନଙ୍କ ପାଇଁ ବେଶ୍ ଅନୁକୂଳ ବୋଲି ପରିବେଶବିତ୍ ଓ ଜୀବ ବିଜ୍ଞାନୀମାନେ ମତପୋଷଣ କରିଛନ୍ତି । ବାସ୍ତବରେ ଏହା ଡଲଫିନ୍‌ର ରକ୍ଷଣାବେକ୍ଷଣା ଓ ସୁରକ୍ଷାର ପ୍ରୟାସ ପାଇଁ ଏକ ନୂତନ ଦିଗନ୍ତ ଆଣିଦେବ ।

## ଡଲଫିନ୍ ସଂଖ୍ୟା ହ୍ରାସର କାରଣ

୧. ବୋଟ ଚାଳନା ସମୟରେ ବୋଟର ଯନ୍ତ୍ରାଂଶଦ୍ୱାରା ଡଲଫିନ୍ ଅନେକ ସମୟରେ ଏହାର ସଂସ୍ପର୍ଶରେ ଆସି ଆଘାତପ୍ରାପ୍ତ ହୋଇ ମୃତ୍ୟୁ ବାରଣ କରିଥାଏ ।

୨. ଚିଲିକାକୁ ଆସୁଥିବା ପର୍ଯ୍ୟଟକମାନଙ୍କଦ୍ୱାରା ବ୍ୟବହୃତ ହେଉଥିବା ବିଭିନ୍ନ ପ୍ରକାର ଦ୍ରବ୍ୟ ଚିଲିକା ଜଳକୁ ନିକ୍ଷେପ କରିବାଦ୍ୱାରା ଏହାର ଜଳ ପ୍ରଦୂଷିତ ହୋଇଥାଏ ଯଦ୍ୱାରା ସେମାନଙ୍କ ସଂଖ୍ୟା ହ୍ରାସ ପାଇବାରେ ସହାୟକ ହୋଇଥାଏ ।



ଚିତ୍ର ୩

୩. ଚିଙ୍ଗୁଡ଼ି ଓ ମାଛ ଚାଷର ଘେରି ଓ ବ୍ୟବହୃତ ବିଭିନ୍ନ ପ୍ରକାରର ଜାଲ ଅନେକ ସମୟରେ ଡଲଫିନ୍‌ମାନଙ୍କ ମୃତ୍ୟୁର କାରଣ ହୋଇଥାଏ ।

୪. ଚିଙ୍ଗୁଡ଼ି ଚାଷ ଦ୍ୱାରା ଜଳ ପ୍ରଦୂଷଣ ହୋଇ ସେମାନଙ୍କ ସଂଖ୍ୟାରେ ହ୍ରାସ ପାଇଁ ପରିବେଶ ସୃଷ୍ଟି କରିଥାଏ ।

୫. ସ୍ଥାନୀୟ ଲୋକେ ନିଜର ଜୀବିକା ପାଇଁ ମାତ୍ରାଧିକ୍ୟ ଭାବେ ଚିଲିକା ଜଳ ଉପରେ ନିର୍ଭର କରିବାଦ୍ୱାରା ଡଲଫିନ୍‌ର ବାସୋପଯୋଗୀ ପରିବେଶ ଉପରେ ପ୍ରଭାବ ପକାଇଥାଏ ।

## ଡଲଫିନ୍‌ର ସୁରକ୍ଷା ପାଇଁ ଆବଶ୍ୟକୀୟ ପଦକ୍ଷେପ

ଏହି ବିରଳ ପ୍ରଜାତିର ଜୀବଟିର ସଂରକ୍ଷଣର ଆବଶ୍ୟକତା ରହିଛି । ଏହାର କାରଣମାନ, ନିମ୍ନରେ ଦିଆଗଲା ।

୧. ଜୈବ-ବିବିଧତା ସଂରକ୍ଷିତ ରଖିବା,

୨. ଜୈବମଣ୍ଡଳରେ ସମାନତା ରକ୍ଷା କରିବା,

୩. ପର୍ଯ୍ୟଟକଙ୍କୁ ଆକୃଷ୍ଟ କରିବା ଓ ସରକାରଙ୍କ ରାଜସ୍ୱରେ ଅଭିବୃଦ୍ଧି କରାଇବା,

୪. ସ୍ଥାନୀୟ ବାସିନ୍ଦାଙ୍କ ଜୀବିକା ପାଇଁ ଏହି ପରିବେଶରୁ ଏକ ପନ୍ଥାକୁ ପେଶା ରୂପେ ବାଛିନେବା,

୫. ସେମାନଙ୍କର ବ୍ୟବହାର, ପ୍ରଜନନ, ଶାରୀରିକ ବୃଦ୍ଧି, ଲିଙ୍ଗ ନିରୂପଣ ଓ ଜିନ୍ ସମ୍ବନ୍ଧୀୟ ବୈଜ୍ଞାନିକ ତଥ୍ୟ ପାଇଁ ଅନୁଧ୍ୟାନ ଓ ଗବେଷଣା କରିବା ଓ

୬. ଏହାର ପ୍ରାକୃତିକ ସୌନ୍ଦର୍ଯ୍ୟକୁ ଉପଭୋଗ କରିବା ।

ତେଣୁ ସେମାନଙ୍କର ସୁରକ୍ଷା, ସଂରକ୍ଷଣ ଓ ବଂଶବୃଦ୍ଧି ପାଇଁ ନିମ୍ନଲିଖିତ ପଦକ୍ଷେପଗୁଡ଼ିକ ଗ୍ରହଣ କରିବାର ଆବଶ୍ୟକତା ରହିଛି ।

୧. ପଲିଥିନ ବ୍ୟବହାର ଉପରେ ଥିବା ନିୟମମାନ କଡ଼ାକଡ଼ି ଭାବରେ ଲାଗୁ କରିବା ।

୨. ସେଠାରେ ଥିବା ସ୍ଥାନୀୟ ଲୋକେ, ପର୍ଯ୍ୟଟକ ଓ ବୋଟ ଚାଳକମାନଙ୍କୁ ସେମାନଙ୍କ ସୁରକ୍ଷା ନିମନ୍ତେ ସଚେତନ କରାଇବା ଓ ସେମାନଙ୍କର ସୁରକ୍ଷା ଓ ସଂରକ୍ଷଣର ବିଭିନ୍ନ ଉପାୟ ଓ କୌଶଳ ସମ୍ବନ୍ଧରେ ଶିକ୍ଷା ଦେବା ।

୩. ବୋଟଦ୍ୱାରା ଡଲଫିନ୍ ମୃତାହତ ହେଉଥିବାରୁ ଏଥିସକାଶେ ବୋଟରେ ପ୍ରୋପେଲର ଗାର୍ଡ଼ ବ୍ୟବହାର କରିବା ।

୪. ସ୍ଥାନୀୟ ଲୋକଙ୍କ ଜୀବିକା ପାଇଁ ଅନ୍ୟାନ୍ୟ ପନ୍ଥା ସବୁ ଗ୍ରହଣ କରିବା ପାଇଁ ସେମାନଙ୍କୁ ପ୍ରବର୍ତ୍ତାଇବା, ଯଦ୍ୱାରା ଚିଲିକା ଲଗୁନ ଉପରେ କମ୍ ନିର୍ଭରଶୀଳ ହେବାଦ୍ୱାରା ଡଲଫିନ୍‌ମାନଙ୍କର ପରିବେଶକୁ ପ୍ରଦୂଷଣରୁ ରକ୍ଷା କରାଯାଇପାରିବ ।

୫. ପର୍ଯ୍ୟଟକଙ୍କଦ୍ୱାରା ବିଭିନ୍ନ ଦ୍ରବ୍ୟ ଚିଲିକା ଜଳକୁ ନିକ୍ଷେପ କରିବା ଉପରେ କଟକଣା ଲାଗୁ କରିବା ।

୬. ବୋଟ ଚାଳକମାନେ ଡଲଫିନମାନଙ୍କଠାରୁ ପ୍ରଚଳିତ ନିୟମାବଳୀ ଅନୁସାରେ ଦୂରତା ରକ୍ଷା କରିବା ।

୭. ପର୍ଯ୍ୟଟକଙ୍କ ପାଇଁ ଉଦ୍ଦିଷ୍ଟ ବୋଟରେ ସର୍ବଦା ଜଣେ ପ୍ରଶିକ୍ଷିତ ଗାଇଡ୍ ରହିବା ଓ ପର୍ଯ୍ୟଟକଙ୍କୁ ଡଲଫିନ୍‌ର ସୁରକ୍ଷା ସମ୍ବନ୍ଧରେ ସଚେତନ କରାଇବା ।

୮. ଚିଲିକା ଲଗୁନର ଚାରିପଟେ ଥିବା ମୃତ୍ତିକାକୁ ଠିକ୍ ଭାବରେ ସଂରକ୍ଷଣ କରିବା ନିମନ୍ତେ ଚାରାରୋପଣ କରି, ମାଟି ଅତଡ଼ା ଖାଇଯିବା ଓ ଚିଲିକା ଲଗୁନ ଧୀରେ ଧୀରେ ପୋତି ହୋଇଯିବାରୁ ରକ୍ଷା କରିବା ।

୯. ଡଲଫିନ୍ ପ୍ରଜନନ ସମୟରେ ପର୍ଯ୍ୟଟକଙ୍କ ଯାତାୟାତରେ ଆବଶ୍ୟକ ମୁତାବକ ପ୍ରତିବନ୍ଧକ ଲଗାଇବା ନିମନ୍ତେ ପଦକ୍ଷେପ ନେବା ।

| | | |
|---|---|---|
| ୧୩୦. | ସାନଖେମୁଣ୍ଡି | ୧. ଧରାକୋଟ ବ୍ଲକ, ୨. ସାନଖେମୁଣ୍ଡି ବ୍ଲକ |
| ୧୩୧. | ହିଞ୍ଜିଳି | ୧. ଶେରଗଡ଼ ବ୍ଲକ, ହିଞ୍ଜିଳିକାଟୁ ବ୍ଲକ, ୩. ହିଞ୍ଜିଳିକାଟୁ (ଏନ୍.ଏ.ସି.) |
| ୧୩୨. | ଗୋପାଳପୁର | ୧. ରଙ୍ଗେଇଲୁଣ୍ଡା ବ୍ଲକ, ୨. କୁକୁଡ଼ାଖଣ୍ଡି ବ୍ଲକର ହୁଗୁଳାପଟା, ଗୁରୁଣ୍ଟି, ବୋରିଗାଁ ଓ ନିମଖଣ୍ଡି ଗ୍ରାମପଞ୍ଚାୟତ, ୩. ଗୋପାଳପୁର (ଏନ୍.ଏ.ସି.), ୪. ବ୍ରହ୍ମପୁର ପୌରପରିଷଦର ୱାର୍ଡ଼ ନମ୍ବର ୨୫ରୁ ୨୭ |
| ୧୩୩. | ବ୍ରହ୍ମପୁର | ୧. ବ୍ରହ୍ମପୁର ପୌରପରିଷଦର ୱାର୍ଡ଼ ନମ୍ବର ୧ରୁ ୨୪ |
| ୧୩୪. | ଦିଗପହଣ୍ଡି | ୧. ଦିଗପହଣ୍ଡି ବ୍ଲକ, ୨. କୁକୁଡ଼ାଖଣ୍ଡି ବ୍ଲକର ରୋହିଗାଁ, ବଉଳଝୋଳି, କୁକୁଡ଼ାଖଣ୍ଡି, ମସିଆଖାଳି, ଜଗଦଳପୁର, ଆଙ୍କୁଶପୁର, ଦକ୍ଷିଣପୁର, ବାଲିପଡ଼ା, ଡେଙ୍ଗାପଦର, ବଛପଲି, ଅନନ୍ତେଇ, ଲାଠି, ମହଡ଼ା, କଙ୍କିଆ, ସାହାଳା ଓ ବାଘଲଟି ଗ୍ରାମପଞ୍ଚାୟତ, ୩. ଦିଗପହଣ୍ଡି (ଏନ୍.ଏ.ସି.) |
| ୧୩୫. | ଚିକିଟି | ୧. ପାତ୍ରପୁର ବ୍ଲକ, ୨. ଚିକିଟି ବ୍ଲକ, ୩. ଚିକିଟି (ଏନ୍.ଏ.ସି.) |
| | | **୨୭. ଜିଲ୍ଲା - ଗଜପତି** |
| ୧୩୬. | ମୋହନା (ଏସ୍.ଟି.) | ୧. ମୋହନା ବ୍ଲକ, ୨. ରାମଗିରି-ଉଦୟଗିରି ବ୍ଲକ, ୩. ନୂଆଗଡ଼ ବ୍ଲକ, ୪. ରାୟଗଡ଼ା ବ୍ଲକ |
| ୧୩୭. | ପାରଳାଖେମୁଣ୍ଡି | ୧. ଗୁମ୍ମା ବ୍ଲକ, ୨. କାଶୀନଗର ବ୍ଲକ, ୩. ପାରଳାଖେମୁଣ୍ଡି ବ୍ଲକ, ୪. ପାରଳାଖେମୁଣ୍ଡି (ପୌରପରିଷଦ), ୫. କାଶୀନଗର (ଏନ୍.ଏ.ସି.) |
| | | **୨୮. ଜିଲ୍ଲା - ରାୟଗଡ଼ା** |
| ୧୩୮. | ଗୁଣୁପୁର (ଏସ୍.ଟି.) | ୧. ରାମନାଗୁଡ଼ା ବ୍ଲକ, ୨. ଗୁଣୁପୁର ବ୍ଲକ, ୩. ଗୁଣୁପୁର (ଏନ୍.ଏ.ସି.), ୪. ପଦ୍ମପୁର ବ୍ଲକ, ୫. ଚନ୍ଦ୍ରପୁର ବ୍ଲକ, ୬. ଗୁଡ଼ାରି ବ୍ଲକ, ୭. ଗୁଡ଼ାରି (ଏନ୍.ଏ.ସି.) |
| ୧୩୯. | ବିଷମ କଟକ (ଏସ୍.ଟି.) | ୧. ମୁନିଗୁଡ଼ା ବ୍ଲକ, ୨. କୋଲନରା ବ୍ଲକ, ୩. ବିଷମ କଟକ ବ୍ଲକ, ୪. କଲ୍ୟାଣସିଂହପୁର ବ୍ଲକ |
| ୧୪୦. | ରାୟଗଡ଼ା (ଏସ୍.ଟି.) | ୧. ରାୟଗଡ଼ା (ପୌରପରିଷଦ), ୨. କାଶୀପୁର ବ୍ଲକ, ୩. ରାୟଗଡ଼ା ବ୍ଲକ |
| | | **୨୯. ଜିଲ୍ଲା - କୋରାପୁଟ** |
| ୧୪୧. | ଲକ୍ଷ୍ମୀପୁର (ଏସ୍.ଟି.) | ୧. ଦଶମନ୍ତପୁର ବ୍ଲକ, ୨. ଲକ୍ଷ୍ମୀପୁର ବ୍ଲକ, ୩. ବନ୍ଧୁଗାଁ ବ୍ଲକ, ୪. ନାରାୟଣପାଟଣା ବ୍ଲକ |
| ୧୪୨. | କୋଟପାଡ଼ (ଏସ୍.ଟି.) | ୧. କୋଟପାଡ଼ ବ୍ଲକ, ୨. କୁନ୍ଦ୍ରା ବ୍ଲକ, ୩. କୋଟପାଡ଼ (ଏନ୍.ଏ.ସି.), ୪. ବରୀଗୁମା ବ୍ଲକର ଡେଙ୍ଗାପଦର, ଆଉଁଳି, ମାଳଦା, ସାନପାରିଆ, ଜୁଜାରି, କାମରା, ପଣ୍ଡସଗୁଡ଼ା, ଶଶାହାଣ୍ଡି, କଣାଗାଁ, ଅଞ୍ଚଳା ଓ ବିଜାପୁର ଗ୍ରାମପଞ୍ଚାୟତ, ୫. ବୈପାରିଗୁଡ଼ା ବ୍ଲକର ଗୁପ୍ତେଶ୍ୱର, ରାମଗିରି, ଦଣ୍ଡାବାଡ଼, ବାଲିଗାଁ, କାଠପଡ଼ା, ମାଝିଗୁଡ଼ା ଓ ତେନ୍ତୁଳିଗୁମ୍ମା ଗ୍ରାମପଞ୍ଚାୟତ |
| ୧୪୩. | ଜୟପୁର | ୧. ଜୟପୁର ବ୍ଲକ, ୨. ଜୟପୁର (ପୌରପରିଷଦ), ୩. ବରୀଗୁମା ବ୍ଲକର ଭୈରବସିଙ୍ଗିପୁର, ବେଣାଗାଁ, ବଡ଼ିଗାଁ, ବରୀଗୁମା, ଚମ୍ପାପଦର, ଗୁଜିନୀଗୁଡ଼ା, ଗୁମୁଡ଼ା, ହରଡ଼ାଗୁଡ଼ା, ହର୍ଦୋଲୀ, କାମ୍ତା, କାଠରଗଡ଼ା, କୁମୁଲି, ମୁଞ୍ଜା, ନାରିଗାଁ, ନୂଆଗାଁ, ରଣସପୁର, ସର୍ଗିଗୁଡ଼ା, ସେମଳାଗୁଡ଼ା ଓ ବେଣାସୁର ଗ୍ରାମପଞ୍ଚାୟତ |
| ୧୪୪. | କୋରାପୁଟ (ଏସ୍.ସି.) | ୧. କୋରାପୁଟ ବ୍ଲକର ବଡ଼ଶୁକୁ, ଦେଓଘାଟି, କେନ୍ଦାର, କେରେଙ୍ଗା, ଲଙ୍କାପୁଟ, ମହାଦେଇପୁଟ, ମନବର, ମଷ୍ଟିପୁଟ, ପଦ୍ମପୁର ଓ ଉମୁରି ଗ୍ରାମପଞ୍ଚାୟତ, ୨. ଲମତାପୁଟ ବ୍ଲକ, ୩. କୋରାପୁଟ |

| | | |
|---|---|---|
| | | (ଏନ୍.ଏ.ସି.), ୪. ବୈପାରିଗୁଡ଼ା ବ୍ଲକର ବୋଦାପୁଟ, ବୈପାରୀଗୁଡ଼ା, ଚନ୍ଦ୍ରପଡ଼ା, ଚିପାଖୁର, ଦଶମନ୍ତପୁର, ଦୋରାଗୁଡ଼ା, କେନ୍ଦୁଗୁଡ଼ା, କଲାର ଓ ମହୁଲି ଗ୍ରାମପଞ୍ଚାୟତ, ୫. ସୁନାବେଡ଼ା (ଏନ୍.ଏ.ସି.) |
| ୧୪୫. | ପଟ୍ଟାଙ୍ଗି (ଏସ୍.ଟି.) | ୧. ସେମିଳିଗୁଡ଼ା ବ୍ଲକ, ୨. ନନ୍ଦପୁର ବ୍ଲକ, ୩. ପଟ୍ଟାଙ୍ଗି ବ୍ଲକ, ୪. କୋରାପୁଟ ବ୍ଲକର ଲିଟିଗୁଡ଼ା, ଡୁମୁରିପଦର ଓ ମାଥାଲପୁଟ, (ଦାମନଯୋଡ଼ି ସି.ଟି. ସହିତ) ଗ୍ରାମପଞ୍ଚାୟତ |
| | | **୩୦. ଜିଲ୍ଲା - ମାଲକାନଗିରି** |
| ୧୪୬. | ମାଲକାନଗିରି (ଏସ୍.ଟି.) | ୧. କାଲିମେଳା ବ୍ଲକ, ୨. ମାଲକାନଗିରି ବ୍ଲକ, ୩. ମାଲକାନଗିରି (ଏନ୍.ଏ.ସି.), ୪. ପଡ଼ିଆ ବ୍ଲକ, ୫. କୋରୁକୋଣ୍ଡା ବ୍ଲକର ତଣ୍ଡିକି, ଚାଲାଣଗୁଡ଼ା, ମାଟାପାକା, ତଣ୍ଡାପାଲି, ଗୋରାଖୁଣ୍ଟା, ଶିଖପାଲୀ, ବଦଲି, କୋରୁକୋଣ୍ଡା ଓ ତୁମୁସାପାଲୀ ଗ୍ରାମପଞ୍ଚାୟତ |
| ୧୪୭. | ଚିତ୍ରକୋଣ୍ଡା (ଏସ୍.ଟି.) | ୧. ମାଥିଲି ବ୍ଲକ, ୨. କୁଡୁମୁଲୁଗୁମ୍ମା ବ୍ଲକ, ୩. ବାଲିମେଳା (ଏନ୍.ଏ.ସି.), ୪. ଖଇରପୁଟ ବ୍ଲକ, ୫. କୋରୁକୋଣ୍ଡା ବ୍ଲକର ଚିତାପାରି-୩, ଚିତ୍ରକୋଣ୍ଡା, ଦୋରାଗୁଡ଼ା, ଡୁଡ଼ାମେଟା, ଗୁଣ୍ଡାଓ୍ୱାଡ଼ା, କାମଓ୍ୱାଡ଼ା, କପାତୁଟି, ମଣ୍ଡାପଲ୍ଲୀ, ମାରିଓ୍ୱାଡ଼ା, ନୀଳକାମ୍ବେରୁ, ନୂଆଗୁଡ଼ା, ପୁରୁଣା ଚିମିଟାପାଲୀ, ପୋଟ୍ରେଲ, ତାର୍ଲାକୋଟା ଓ ଟନେଲ-କ୍ୟାମ୍ପ ଗ୍ରାମପଞ୍ଚାୟତ |

## ସାରଣୀ-ଖ

## ସଂସଦୀୟ ନିର୍ବାଚନମଣ୍ଡଳୀ ଓ ସେଗୁଡ଼ିକର ବିସ୍ତାର

| କ୍ରମିକ ସଂଖ୍ୟା | ସଂସଦୀୟ ନିର୍ବାଚନ ମଣ୍ଡଳୀର ନାମ | ବିଧାନସଭା ନିର୍ବାଚନ ମଣ୍ଡଳୀ ଅନୁସାରେ ବିସ୍ତାର |
|---|---|---|
| ୧. | ବରଗଡ଼ | ୧. ପଦ୍ମପୁର, ୨. ବିଜେପୁର, ୩. ବରଗଡ଼, ୪. ଅତାବିରା (ଏସ୍.ସି.), ୫. ଭଟ୍ଲି, ୬. ବ୍ରଜରାଜନଗର, ୭. ଝାରସୁଗୁଡ଼ା |
| ୨. | ସୁନ୍ଦରଗଡ଼ (ଏସ୍.ଟି.) | ୮. ତଳସରା (ଏସ୍.ଟି.), ୯. ସୁନ୍ଦରଗଡ଼ (ଏସ୍.ଟି.), ୧୦. ବୀରମିତ୍ରପୁର (ଏସ୍.ଟି.), ୧୧. ରଘୁନାଥପାଲି (ଏସ୍.ସି.), ୧୨. ରାଉରକେଲା, ୧୩. ରାଜଗାଙ୍ଗପୁର (ଏସ୍.ଟି.), ୧୪. ବଣାଇ (ଏସ୍.ଟି.) |
| ୩. | ସମ୍ବଲପୁର | ୧୫. କୁଚିଣ୍ଡା (ଏସ୍.ଟି.), ୧୬. ରେଙ୍ଗାଲି (ଏସ୍.ସି.), ୧୭. ସମ୍ବଲପୁର, ୧୮. ରେଢ଼ାଖୋଲ, ୧୯. ଦେବଗଡ଼, ୬୨. ଛେଣ୍ଡିପଦା (ଏସ୍.ସି.), ୬୩. ଆଠମଲ୍ଲିକ |
| ୪. | କେନ୍ଦୁଝର (ଏସ୍.ଟି.) | ୨୦. ତେଲକୋଇ (ଏସ୍.ଟି.), ୨୧. ଘାସିପୁରା, ୨୨. ଆନନ୍ଦପୁର (ଏସ୍.ସି.), ୨୩. ପାଟଣା (ଏସ୍.ଟି.), ୨୪. କେନ୍ଦୁଝର (ଏସ୍.ଟି.), ୨୫. ଚମ୍ପୁଆ, ୩୦. କରଞ୍ଜିଆ (ଏସ୍.ଟି.) |
| ୫. | ମୟୂରଭଞ୍ଜ (ଏସ୍.ଟି.) | ୨୬. ଯଶିପୁର (ଏସ୍.ଟି.), ୨୭. ସାରସକଣା (ଏସ୍.ଟି.), ୨୮. ରାଇରଙ୍ଗପୁର (ଏସ୍.ଟି.), ୨୯. ବାଙ୍ଗିରିପୋଷୀ (ଏସ୍.ଟି.), ୩୧. ଉଦଳା (ଏସ୍.ଟି.), ୩୩. ବାରିପଦା (ଏସ୍.ଟି.), ୩୪. ମୋରଡ଼ା |
| ୬. | ବାଲେଶ୍ୱର | ୩୨. ବଡ଼ସାହି (ଏସ୍.ସି.), ୩୫. ଜଳେଶ୍ୱର, ୩୬. ଭୋଗରାଇ, ୩୭. ବସ୍ତା, ୩୮. ବାଲେଶ୍ୱର, ୩୯. ରେମୁଣା (ଏସ୍.ସି.), ୪୦. ନୀଳଗିରି |
| ୭. | ଭଦ୍ରକ (ଏସ୍.ସି.) | ୪୧. ସୋରୋ (ଏସ୍.ସି.), ୪୨. ସିମୁଳିଆ, ୪୩. ଭଣ୍ଡାରିପୋଖରୀ, ୪୪. ଭଦ୍ରକ, ୪୫. ବାସୁଦେବପୁର, ୪୬. ଧାମନଗର (ଏସ୍.ସି.), ୪୭. ଚାନ୍ଦବାଲି |

| | | |
|---|---|---|
| ୮. | ଯାଜପୁର (ଏସ୍.ସି.) | ୪୮. ବିଞ୍ଝାରପୁର (ଏସ୍.ସି.), ୪୯. ବରୀ, ୫୦. ବଡ଼ଚଣା, ୫୧. ଧର୍ମଶାଳା, ୫୨. ଯାଜପୁର, ୫୩. କୋରେଇ, ୫୪. ସୁକିନ୍ଦା |
| ୯. | ଢେଙ୍କାନାଳ | ୫୫. ଢେଙ୍କାନାଳ, ୫୬. ହିନ୍ଦୋଳ (ଏସ୍.ସି.), ୫୭. କାମାକ୍ଷାନଗର, ୫୮. ପରଜଙ୍ଗ, ୫୯. ପାଲଲହଡ଼ା, ୬୦. ତାଳଚେର, ୬୧. ଅନୁଗୋଳ |
| ୧୦. | ବଲାଙ୍ଗିର | ୬୪. ବୀରମହାରାଜପୁର (ଏସ୍.ସି.), ୬୫. ସୋନପୁର, ୬୬. ଲୋଇସିଂହା (ଏସ୍.ସି.), ୬୭. ପାଟଣାଗଡ଼, ୬୮. ବଲାଙ୍ଗିର, ୬୯. ଟିଟିଲାଗଡ଼, ୭୦. କଣ୍ଟାବାଞ୍ଜି |
| ୧୧. | କଳାହାଣ୍ଡି | ୭୧. ନୂଆପଡ଼ା, ୭୨. ଖଡ଼ିଆଳ, ୭୭. ଲାଞ୍ଜିଗଡ଼ (ଏସ୍.ଟି.), ୭୮. ଜୁନାଗଡ଼, ୭୯. ଧର୍ମଗଡ଼, ୮୦. ଭବାନୀପାଟଣା (ଏସ୍.ସି.), ୮୧. ନର୍ଲା |
| ୧୨. | ନବରଙ୍ଗପୁର (ଏସ୍.ଟି.) | ୭୩. ଉମରକୋଟ (ଏସ୍.ଟି.), ୭୪. ଝରିଗାଁ (ଏସ୍.ଟି.), ୭୫. ନବରଙ୍ଗପୁର (ଏସ୍.ଟି.), ୭୬. ଡାବୁଗାଁ (ଏସ୍.ଟି.), ୧୪୨. କୋଟପାଡ଼ (ଏସ୍.ଟି.), ୧୪୬. ମାଲକାନଗିରି (ଏସ୍.ଟି.), ୧୪୭. ଚିତ୍ରକୋଣ୍ଡା (ଏସ୍.ଟି.) |
| ୧୩. | କନ୍ଧମାଳ | ୮୨. ବାଲିଗୁଡ଼ା (ଏସ୍.ଟି.), ୮୩. ଘୁ. ଉଦୟଗିରି (ଏସ୍.ଟି.), ୮୪. ଫୁଲବାଣୀ (ଏସ୍.ଟି.), ୮୫. କଣ୍ଟାମାଳ, ୮୬. ବଉଦ, ୧୨୧. ଦଶପଲ୍ଲା (ଏସ୍.ସି.), ୧୨୩. ଭଞ୍ଜନଗର |
| ୧୪. | କଟକ | ୮୭. ବଡ଼ମ୍ବା, ୮୮. ବାଙ୍କୀ, ୮୯. ଆଠଗଡ଼, ୯୦. ବାରବାଟୀ-କଟକ, ୯୧. ଚୌଦ୍ୱାର-କଟକ, ୯୩. କଟକ ସଦର (ଏସ୍.ସି.), ୧୨୦. ଖଣ୍ଡପଡ଼ା |
| ୧୫. | କେନ୍ଦ୍ରାପଡ଼ା | ୯୪. ସାଲେପୁର, ୯୫. ମାହାଙ୍ଗା, ୯୬. ପାଟକୁରା, ୯୭. କେନ୍ଦ୍ରାପଡ଼ା (ଏସ୍.ସି.), ୯୮. ଆଳି, ୯୯. ରାଜନଗର, ୧୦୦. ମହାକାଳପଡ଼ା |
| ୧୬. | ଜଗତ୍‌ସିଂହପୁର (ଏସ୍.ସି.) | ୯୨. ନିଆଳି (ଏସ୍.ସି.), ୧୦୧. ପାରାଦ୍ୱୀପ, ୧୦୨. ତିର୍ତ୍ତୋଲ (ଏସ୍.ସି.), ୧୦୩. ବାଲିକୁଦା-ଏରସମା, ୧୦୪. ଜଗତ୍‌ସିଂହପୁର, ୧୦୫. କାକଟପୁର (ଏସ୍.ସି.), ୧୦୬. ନିମାପଡ଼ା |
| ୧୭. | ପୁରୀ | ୧୦୭. ପୁରୀ, ୧୦୮. ବ୍ରହ୍ମଗିରି, ୧୦୯. ସତ୍ୟବାଦୀ, ୧୧୦. ପିପିଲି, ୧୧୮. ଚିଲିକା, ୧୧୯. ରଣପୁର, ୧୨୨. ନୟାଗଡ଼ |
| ୧୮. | ଭୁବନେଶ୍ୱର | ୧୧୧. ଜୟଦେବ (ଏସ୍.ସି.), ୧୧୨. ଭୁବନେଶ୍ୱର (ମଧ୍ୟ), ୧୧୩. ଭୁବନେଶ୍ୱର (ଉତ୍ତର), ୧୧୪. ଏକାମ୍ର-ଭୁବନେଶ୍ୱର, ୧୧୫. ଜଟଣୀ, ୧୧୬. ବେଗୁନିଆ, ୧୧୭. ଖୋର୍ଦ୍ଧା |
| ୧୯. | ଆସ୍କା | ୧୨୪. ପୋଲସରା, ୧୨୫. କବିସୂର୍ଯ୍ୟନଗର, ୧୨୬. ଖଲ୍ଲିକୋଟ (ଏସ୍.ସି.), ୧୨୮. ଆସ୍କା, ୧୨୯. ସୋରଡ଼ା, ୧୩୦. ସାନଖେମୁଣ୍ଡି, ୧୩୧. ହିଞ୍ଜିଳି |
| ୨୦. | ବ୍ରହ୍ମପୁର | ୧୨୭. ଛତ୍ରପୁର (ଏସ୍.ସି.), ୧୩୨. ଗୋପାଳପୁର, ୧୩୩. ବ୍ରହ୍ମପୁର, ୧୩୪. ଦିଗପହଣ୍ଡି, ୧୩୫. ଚିକିଟି, ୧୩୬. ମୋହନା (ଏସ୍.ଟି.), ୧୩୭. ପାରଳାଖେମୁଣ୍ଡି |
| ୨୧. | କୋରାପୁଟ (ଏସ୍.ଟି.) | ୧୩୮. ଗୁଣୁପୁର (ଏସ୍.ଟି.), ୧୩୯. ବିଷମ କଟକ (ଏସ୍.ଟି.), ୧୪୦. ରାୟଗଡ଼ା (ଏସ୍.ଟି.), ୧୪୧. ଲକ୍ଷ୍ମୀପୁର (ଏସ୍.ଟି.), ୧୪୩. ଜୟପୁର, ୧୪୪. କୋରାପୁଟ (ଏସ୍.ସି.), ୧୪୫. ପଟ୍ଟାଙ୍ଗି (ଏସ୍.ଟି.) |

**ଟିପ୍ପଣୀ :** ସାରଣୀ-କ ରେ ଥିବା ଜିଲ୍ଲା, ସବ୍-ଡିଭିଜନ, ଗୋଷ୍ଠୀ ଉନ୍ନୟନ ବ୍ଲକ (CDB) ଗ୍ରାମପଞ୍ଚାୟତ, ମହାନଗର ନିଗମ (MC), ପୌରପରିଷଦ (M), ଅଧିସୂଚିତ କ୍ଷେତ୍ର ପରିଷଦ (NAC), ଆଉଟ ଗ୍ରୋଥ୍ (OG) ୱାର୍ଡ଼ ଓ ସେନ୍‌ସସ୍ ସହର (CT) ବା ଅନ୍ୟ କ୍ଷେତ୍ରୀୟ ଡିଭିଜନ ପ୍ରତି ପ୍ରସଙ୍ଗ ସୂଚନା, ତା. ୧୫ ଫେବୃଆରୀ, ୨୦୦୪ରେ ଜିଲ୍ଲା ସବ୍‌ଡିଭିଜନ୍ ଗୋଷ୍ଠୀ ଉନ୍ନୟନ ବ୍ଲକ (CDB), ଗ୍ରାମପଞ୍ଚାୟତ (GP), ମହାନଗର ନିଗମ (MC), ପୌରପରିଷଦ (M), ଅଧିସୂଚିତ କ୍ଷେତ୍ର ପରିଷଦ (NAC), ଆଉଟ ଗ୍ରୋଥ (OG), ୱାର୍ଡ଼ ଓ ସେନ୍‌ସସ୍ ସହରରେ ଅନ୍ତର୍ଭୁକ୍ତ ଥିବା କ୍ଷେତ୍ରକୁ ବୁଝାଇବ ।

ସ୍ୱା/-
କୁଳଦୀପ ସିଂହ
ଅଧ୍ୟକ୍ଷ

ସ୍ୱା/-
ଏନ୍. ଗୋପାଳସ୍ୱାମୀ
ସଦସ୍ୟ

ସ୍ୱା/-
ସଞ୍ଜୀବ ଚନ୍ଦ୍ର ହୋତା
ସଦସ୍ୟ

ଆଦେଶ କ୍ରମେ
ଶଂଗାରା ରାମ
ସଚିବ

# ଆନ୍ତର୍ଜାତିକ ପରିମଳ ବର୍ଷ-୨୦୦୮

ସାଧାରଣ ମଣିଷର ଜୀବନରେ ପରିମଳର ମୌଳିକ ଆବଶ୍ୟକତାକୁ ଉପଲବ୍ଧି କରି ମିଳିତ ଜାତିସଂଘର ସାଧାରଣ ସଭା ୨୦୦୮ ମସିହାକୁ ଆନ୍ତର୍ଜାତିକ ପରିମଳ ବର୍ଷ ରୂପେ ଘୋଷଣା କରିଛନ୍ତି । ଏହି ଉପଲକ୍ଷେ ଓଡ଼ିଶାର ଗ୍ରାମ୍ୟ ଉନ୍ନୟନ ବିଭାଗ, ପଞ୍ଚାୟତିରାଜ, ମହିଳା ଓ ଶିଶୁ ବିକାଶ, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ଏବଂ ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗମାନଙ୍କ ସହଯୋଗିତାରେ ସମ୍ପୂର୍ଣ୍ଣ ପରିମଳ ଅଭିଯାନକୁ ଆଗେଇ ନେବାପାଇଁ ଚଳିତବର୍ଷ ଅନେକଗୁଡ଼ିଏ କାର୍ଯ୍ୟକ୍ରମ ଆୟୋଜନ କରିବାକୁ ଯାଉଛନ୍ତି ।

୨୦୦୧ ମସିହା ସୁଦ୍ଧା ଆମ ରାଜ୍ୟର ଗ୍ରାମାଞ୍ଚଳରେ ବସବାସ କରୁଥିବା ପରିବାରମାନଙ୍କ ମଧ୍ୟରୁ ୭୦ ଲକ୍ଷ ପରିବାରରେ ମୌଳିକ ପରିମଳ ସୁବିଧା ବା ପାଇଖାନା ନଥିଲା । ଅଦ୍ୟାବଧି ୭୫ ଶତାଂଶ ଲୋକଙ୍କ ଘରେ ପାଇଖାନା ନ ଥିବାରୁ ଗ୍ରାମାଞ୍ଚଳର ଅଧିବାସୀମାନେ ବିଭିନ୍ନ ଜଳବାହିତ ରୋଗଦ୍ୱାରା ଆକ୍ରାନ୍ତ ହେଉଛନ୍ତି । ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଗ୍ରାମାଞ୍ଚଳରେ ଜନ୍ମ ନେଉଥିବା ପ୍ରତି ୧୦୦୦ ଜୀବନ୍ତ ଶିଶୁମାନଙ୍କ ମଧ୍ୟରୁ ପ୍ରାୟ ୬୯ ଜଣ ଶିଶୁ ବର୍ଷେ ପୂର୍ବରୁ ମୃତ୍ୟୁବରଣ କରୁଛନ୍ତି । ସେହିଭଳି ଏକ ଲକ୍ଷ ମା'ମାନଙ୍କ ମଧ୍ୟରୁ ୩୫୮ ଜଣ ମା' ଅକାଳ ମୃତ୍ୟୁବରଣ କରୁଛନ୍ତି ।

ଏହାକୁ ଲାଘବ କରିବା ସହ ସୁସ୍ଥ ଓ ସ୍ୱଚ୍ଛ ଜୀବନଯାପନ ପାଇଁ ଭାରତ ସରକାର ୧୯୯୯ ମସିହା ଡିସେମ୍ବର ମାସରେ ସମ୍ପୂର୍ଣ୍ଣ ପରିମଳ ଅଭିଯାନ ଆରମ୍ଭ କରିଛନ୍ତି । ଓଡ଼ିଶାରେ ଏହି କାର୍ଯ୍ୟକ୍ରମ ପର୍ଯ୍ୟାୟକ୍ରମେ ୧୯୯୯ରୁ ୨୦୦୫ ମସିହା ମଧ୍ୟରେ ସମସ୍ତ ଜିଲ୍ଲାରେ କାର୍ଯ୍ୟକାରୀ କରାଯାଇଛି । ୨୦୦୮ ମସିହା ମାର୍ଚ୍ଚ ଶେଷ ସୁଦ୍ଧା ରାଜ୍ୟର ଗ୍ରାମାଞ୍ଚଳରେ ୧୭,୯୨,୯୭୫ଟି ଘରୋଇ ପାଇଖାନା, ୩୪,୩୦୯ଟି ବିଦ୍ୟାଳୟ ପାଇଖାନା ଓ ୧୧,୦୨୨ଟି ଅଙ୍ଗନବାଡ଼ି ପାଇଖାନା ସମ୍ପୂର୍ଣ୍ଣ ପରିମଳ ଅଭିଯାନ ଜରିଆରେ ନିର୍ମିତ ହୋଇ ବ୍ୟବହାର ହେଉଛି । ପରିସଂଖ୍ୟାନ ଦୃଷ୍ଟିରୁ ୨୫ ଶତାଂଶ ଲୋକଙ୍କ ଘରେ, ୪୯ ଶତାଂଶ ବିଦ୍ୟାଳୟରେ ଏବଂ ୪୪ ଶତାଂଶ ଅଙ୍ଗନବାଡ଼ିରେ ପାଇଖାନା ତିଆରି ହୋଇ ବ୍ୟବହାର ହେଉଛି । ଆମକୁ ୨୦୧୨ ମସିହା ସୁଦ୍ଧା ସହସ୍ରାବ୍ଦରେ ଉନ୍ନୟନ ଲକ୍ଷ୍ୟ ପୂରଣ କରିବା ପାଇଁ ଆହୁରି ଅନେକ କାର୍ଯ୍ୟ କରିବାକୁ ହେବ ବୋଲି ରାଜ୍ୟ ସରକାରଙ୍କ ପକ୍ଷରୁ କୁହାଯାଇଛି ।

ସମ୍ପୂର୍ଣ୍ଣ ପରିମଳ ଅଭିଯାନ ଏକ ସାମାଜିକ କାର୍ଯ୍ୟକ୍ରମ । ଅନ୍ୟାନ୍ୟ ସରକାରୀ କାର୍ଯ୍ୟକ୍ରମ ପରି ଏହାକୁ ବିଚାର ନକରି ଏକ ସାମାଜିକ ଆନ୍ଦୋଳନର ରୂପରେଖ ଦେବାପାଇଁ ସଂଯୋଗ ବିଭାଗଗୁଡ଼ିକ ଉଦ୍ୟମ ଆରମ୍ଭ କରିଛନ୍ତି । ଲୋକମାନଙ୍କର ମାନସିକତାରେ ପରିବର୍ତ୍ତନ ଆଣିବା ପାଇଁ ସମସ୍ତ ଅଧିକାରୀ, ବ୍ୟକ୍ତିବିଶେଷ, ସଚେତନ କର୍ମୀ ଓ ଗଣମାଧ୍ୟମମାନଙ୍କର ଗୁରୁଦାୟିତ୍ୱ ରହିଛି ।

ଏହି ଲକ୍ଷ୍ୟକୁ ସାକାର କରିବା ପାଇଁ ରାଜ୍ୟ ସରକାର ଚଳିତବର୍ଷ ଗ୍ରାମପଞ୍ଚାୟତମାନଙ୍କୁ ପରିମଳ ବ୍ୟବସ୍ଥା କାର୍ଯ୍ୟକାରୀ କରିବାର ଦାୟିତ୍ୱ ଅର୍ପଣ କରିଛନ୍ତି । ତୃଣମୂଳ ସ୍ତରରେ ଥିବା ସରପଞ୍ଚ, ୱାର୍ଡ଼ ମେମ୍ବର, ସ୍ୱାବଲମ୍ବୀ କାରିଗର, ଅଙ୍ଗନବାଡ଼ି କର୍ମୀ, ଆଶା କର୍ମୀ, ଶିକ୍ଷା ସହାୟକ/ପ୍ରାଥମିକ ଶିକ୍ଷକ, ସ୍ୱେଚ୍ଛାସେବୀ ଅନୁଷ୍ଠାନର କର୍ମକର୍ତ୍ତା ଓ ସଭ୍ୟ ଏବଂ ସ୍ୱୟଂ ସହାୟକ ଗୋଷ୍ଠୀର କର୍ମକର୍ତ୍ତା ଓ ସଭ୍ୟମାନଙ୍କୁ ନେଇ ସମ୍ପୂର୍ଣ୍ଣ ପରିମଳ ଅଭିଯାନକୁ ଏକ ଆନ୍ଦୋଳନ ରୂପେ ଗଢ଼ି ତୋଳିବାର ଉଦ୍ୟମ ଆରମ୍ଭ କରିଛନ୍ତି । ଏହି କାର୍ଯ୍ୟକ୍ରମକୁ ସଂଯୋଗ କାର୍ଯ୍ୟକ୍ରମ ରୂପେ ରାଜ୍ୟର ପାଞ୍ଚଟି ବିଭାଗ ସହାୟତା ପ୍ରଦାନ କରୁଛନ୍ତି ।

ଜିଲ୍ଲା ଜଳ ପରିମଳ ମିଶନର କାର୍ଯ୍ୟକ୍ରମକୁ ବିକେନ୍ଦ୍ରୀକରଣ କରାଯାଇ ବ୍ଲକ୍ ସ୍ତରରେ ବ୍ଲକ୍ ସ୍ୱାସ୍ଥ୍ୟ ଜଳ ଓ ପରିମଳ ସମିତିମାନ ଗଠନ କରିବା କାର୍ଯ୍ୟ ଆରମ୍ଭ ହୋଇଛି । ପଞ୍ଚାୟତ ସମିତି ଚେୟାରମ୍ୟାନଙ୍କ ଅଧକ୍ଷତାରେ ଗଠିତ ଏହି କମିଟିରେ ସଂଯୋଗ ବିଭାଗମାନଙ୍କର ସମସ୍ତ ବ୍ଲକସ୍ତରୀୟ କର୍ମକର୍ତ୍ତା ସାମିଲ ହୋଇଛନ୍ତି । ବ୍ଲକ୍‌ର ଗୋଷ୍ଠୀ ଉନ୍ନୟନ ଅଧିକାରୀ ଏହି କମିଟିର ମୁଖ୍ୟ କାର୍ଯ୍ୟ ନିର୍ବାହୀ ରୂପେ କାର୍ଯ୍ୟ କରୁଛନ୍ତି । ପ୍ରତି ବ୍ଲକ୍‌ରେ ଜଣେ କନିଷ୍ଠ ଯନ୍ତ୍ରୀଙ୍କୁ ବ୍ଲକସ୍ତରୀୟ ସମ୍ପୂର୍ଣ୍ଣ ପରିମଳ ଅଭିଯାନ ସଂଯୋଜକ ରୂପେ ନିଯୁକ୍ତି ଦିଆଯାଇଛି । ପଞ୍ଚାୟତ ସ୍ତରରେ ସରପଞ୍ଚଙ୍କ ଅଧକ୍ଷତାରେ ଗ୍ରାମପଞ୍ଚାୟତସ୍ତରୀୟ ସ୍ୱାସ୍ଥ୍ୟ, ଜଳ ଓ ପରିମଳ ସମିତି ଗଠିତ ହୋଇଛି । ଏହି ସମିତିରେ ୫ଟି ସଂଯୋଗ ବିଭାଗର ସମସ୍ତ ତୃଣମୂଳ ସ୍ତରୀୟ କର୍ମଚାରୀ ସଦସ୍ୟ ରହିଛନ୍ତି । ଏହି ବିକେନ୍ଦ୍ରୀକରଣ କାର୍ଯ୍ୟକ୍ରମକୁ ପଞ୍ଚାୟତିରାଜ ଓ ଅନ୍ୟାନ୍ୟ ସମସ୍ତ ସଂଯୋଗ ବିଭାଗଗୁଡ଼ିକ ସମ୍ପୂର୍ଣ୍ଣ ସହଯୋଗ ଯୋଗାଉଛନ୍ତି ।

ଚଳିତବର୍ଷ ସମ୍ପୂର୍ଣ୍ଣ ପରିମଳ ଅଭିଯାନରେ ଚାଲୁଥିବା କାର୍ଯ୍ୟକ୍ରମକୁ ବଜାୟ ରଖିବା ସହ ୩୧୪ଟି ବ୍ଲକ୍‌ର ବ୍ଲକ୍ ପିଛା ୫ଟି କରି ୧୫୭୦ଟି ଗ୍ରାମପଞ୍ଚାୟତକୁ ନିର୍ମଳ ଗ୍ରାମପଞ୍ଚାୟତରେ ପରିଣତ କରିବା ପାଇଁ ଉଦ୍ୟମ ଆରମ୍ଭ ହୋଇଛି । ଏହି କାର୍ଯ୍ୟକ୍ରମରେ ବ୍ଲକ୍ ଓ ପଞ୍ଚାୟତ ସ୍ତରରେ କାର୍ଯ୍ୟରତ ସଂଯୋଗ ବିଭାଗଗୁଡ଼ିକର ସମସ୍ତ ଅଧିକାରୀ ଓ କର୍ମଚାରୀମାନଙ୍କୁ ସାମିଲ କରିବା ପାଇଁ ସମ୍ମିଳିତ ଉଦ୍ୟମ ଆରମ୍ଭ ହୋଇଛି । ଆନ୍ତର୍ଜାତିକ ଶିଶୁ ପାଣ୍ଠି ଏହି କାର୍ଯ୍ୟକ୍ରମକୁ ଆଗେଇ ନେବା ପାଇଁ ସହଯୋଗ କରୁଛନ୍ତି ।

ଆନ୍ତର୍ଜାତିକ ପରିମଳ ବର୍ଷର ଶୁଭାରମ୍ଭ ମାନ୍ୟବର ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ କରକମଳରେ ଗତ ଜୁନ୍ ୧୮ ତାରିଖରେ ଆନୁଷ୍ଠାନିକ ଭାବେ ଖଣିଜ ଏବଂ ବସ୍ତୁ ପ୍ରଯୁକ୍ତି ପ୍ରତିଷ୍ଠାନ ସଭାଗୃହରୁ ଆରମ୍ଭ କରାଯାଇଛି । ଏହି କାର୍ଯ୍ୟକ୍ରମରେ ସଂଯୋଗ ବିଭାଗର ମାନ୍ୟବର ମନ୍ତ୍ରୀମାନଙ୍କ ସହ ଅନ୍ୟାନ୍ୟ କର୍ମକର୍ତ୍ତା ଯୋଗଦାନ କରିଛନ୍ତି । ଏହି ଉପଲକ୍ଷେ ବିଭିନ୍ନ ପଞ୍ଚାୟତରେ ପରିମଳ କାର୍ଯ୍ୟକ୍ରମକୁ ଆଗେଇ ନେଇଥିବା ୨୫ ଜଣ ସରପଞ୍ଚଙ୍କୁ 'ପରିମଳ ମିତ୍ର' ପୁରସ୍କାର ଏବଂ ଜଳଧାରା କାର୍ଯ୍ୟକ୍ରମକୁ ସଫଳ କରିଥିବା ୩୧ ଜଣ କନିଷ୍ଠ ଯନ୍ତ୍ରୀଙ୍କୁ ସମ୍ବର୍ଦ୍ଧିତ କରାଯାଇଛି । ପ୍ରକାଶ ଥାଉ କି ୫୦୦ ବା ତଦୁର୍ଦ୍ଧ ଘରୋଇ ପାଇଖାନା ନିଜସ୍ୱ ଉଦ୍ୟମରେ ଅକ୍ଟୋବର ୨ ତାରିଖ ୨୦୦୭ ମସିହାରୁ ଏପ୍ରିଲ ୧ ତାରିଖ ୨୦୦୮ ମସିହା ସୁଦ୍ଧା ନିଜ ପଞ୍ଚାୟତରେ ନିର୍ମାଣ କରାଇଥିବା ସରପଞ୍ଚଙ୍କୁ ଟ.୫୦,୦୦୦ର ନଗଦ ଆର୍ଥିକ ପୁରସ୍କାର ଏବଂ ୧୦୦୦ ବା ତଦୁର୍ଦ୍ଧ ପାଇଖାନା କରାଇଥିବା ସରପଞ୍ଚଙ୍କୁ ଏକ ଲକ୍ଷ ଟଙ୍କାର ପୁରସ୍କାର ପ୍ରଦାନ କରାଯାଇଛି ।

୨୦୦୭-୦୮ ମସିହାରେ ଆମ ରାଜ୍ୟ ତରଫରୁ ଭାରତ ସରକାରଙ୍କୁ ୨୫୭ଟି ନିର୍ମଳ ଗ୍ରାମ ପୁରସ୍କାର ପାଇଁ ପ୍ରସ୍ତାବ ଦିଆଯାଇଛି ଏବଂ ଭାରତ ସରକାରଙ୍କ ଦ୍ୱାରା ନିୟୋଜିତ ଅନୁଷ୍ଠାନର କର୍ମକର୍ତ୍ତାମାନେ ବର୍ତ୍ତମାନ ତାହାର ସମୀକ୍ଷା କରୁଛନ୍ତି । ୨୦୦୫-୦୬ରେ ୮ଟି ଏବଂ ୨୦୦୬-୦୭ରେ ୩୩ଟି ନିର୍ମଳ ଗ୍ରାମ ପୁରସ୍କାର ଆମ ରାଜ୍ୟର ବିଭିନ୍ନ ପଞ୍ଚାୟତ ପାଇଛନ୍ତି ।

ଚଳିତବର୍ଷ ଗ୍ରାମ୍ୟ ଉନ୍ନୟନ ବିଭାଗ ତରଫରୁ ଏକ ସଂଯୋଗ ହେଲ୍ପ ଲାଇନ୍ ଜରିଆରେ ଗ୍ରାମାଞ୍ଚଳର ଜଳଯୋଗାଣରେ ଅଚଳାବସ୍ଥାର ଦୂରୀକରଣ ତଥା ଘରୋଇ ପାଇଖାନା ସ୍ଥାପନ ବିଷୟରେ ସହାୟତା ଯୋଗାଇ ଦିଆଯାଉଛି । ଗାଁର ନଳକୂପ କିମ୍ବା ପାଇପ୍ ଜଳ ଯୋଗାଣ ଖରାପ ଥିଲେ ଓ ଘରୋଇ ପାଇଖାନା ବସାଇବା ପାଇଁ ଅଧିକା ଜାଣିବାକୁ ମାଗଣାରେ ସଂଯୋଗ ହେଲ୍ପ ଲାଇନ୍ ୧୮୦୦ ୩୪୫ ୬୭୭୦ କୁ ଦିବା ୧୦ ଘଟିକାରୁ ଅପରାହ୍ଣ ୩ ଘଟିକା ମଧ୍ୟରେ ଫୋନ୍ କରି ଅସୁବିଧା ଦୂର କରାଯିବାକୁ ଅନୁରୋଧ କରାଯାଇଛି ।

ଆନ୍ତର୍ଜାତିକ ପରିମଳ ବର୍ଷ ଉପଲକ୍ଷେ ଚଳିତ ବର୍ଷ ନିମ୍ନୋକ୍ତ କାର୍ଯ୍ୟକ୍ରମଗୁଡ଼ିକ ଗତ ଜୁନ୍‌ମାସରୁ ନଭେମ୍ବର ମାସ ପର୍ଯ୍ୟନ୍ତ ଆୟୋଜିତ ହେବ, ସେଗୁଡ଼ିକ ହେଲା-

- ସଂଯୋଗ ସ୍ମରଣିକା ପ୍ରକାଶନ,
- ମାନ୍ୟବର ମୁଖ୍ୟମନ୍ତ୍ରୀ ଓ ସଂଯୋଗ ବିଭାଗମାନଙ୍କର ମାନବ୍ୟର ମନ୍ତ୍ରୀମାନଙ୍କଦ୍ୱାରା ଜିଲ୍ଲା, ବ୍ଲକ୍, ପଞ୍ଚାୟତ ଓ ଗ୍ରାମୀଣ ସ୍ତରର କର୍ମକର୍ତ୍ତା ଓ କର୍ମଚାରୀମାନଙ୍କୁ ଆନ୍ତର୍ଜାତିକ ପରିମଳ ବର୍ଷ ଉପଲକ୍ଷେ ପତ୍ର ପ୍ରେରଣ,
- ଦୂରଦର୍ଶନ ଓ ରେଡ଼ିଓରେ ଆଲୋଚନା, ବିଜ୍ଞାପନ ପ୍ରସାରଣ,
- ବିଭିନ୍ନ ସମ୍ବାଦପତ୍ରରେ ବିଜ୍ଞାପନ ତଥା ସମ୍ବାଦ ପ୍ରସାରଣ,
- ଦୃଶ୍ୟଶ୍ରାବ୍ୟ କାର୍ଯ୍ୟକ୍ରମ ପ୍ରସ୍ତୁତି ଓ ପ୍ରସାରଣ,
- ଗ୍ରାମସାଟ୍ ଜରିଆରେ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ଆୟୋଜନ,
- ବିଭିନ୍ନ ଗ୍ରାମପଞ୍ଚାୟତ, ବ୍ଲକ୍ ଓ ଜିଲ୍ଲାସ୍ତରରେ ସଭାସମିତି ଏବଂ ଆଲୋଚନାଚକ୍ର ଆୟୋଜନ,
- ସଂଯୋଗ ବିଭାଗଗୁଡ଼ିକର ବ୍ଲକ୍‌ସ୍ତରୀୟ କର୍ମକର୍ତ୍ତାମାନଙ୍କର ଆଲୋଚନାଚକ୍ର ଓ ରାଜ୍ୟସ୍ତରୀୟ ସମ୍ମିଳନୀ,
- ଛାତ୍ରଛାତ୍ରୀମାନଙ୍କ ମଧ୍ୟରେ ପରିମଳ ସମ୍ପର୍କୀୟ ବିଭିନ୍ନ ପ୍ରତିଯୋଗିତା ଆୟୋଜନ,
- ବ୍ଲକ୍, ଜିଲ୍ଲା ଓ ରାଜ୍ୟସ୍ତରରେ ପରିମଳ କ୍ଷେତ୍ରରେ ଭଲ କାମ କରିଥିବା ଗ୍ରାମ, ଅନୁଷ୍ଠାନ, ବିଦ୍ୟାଳୟ, ଅଙ୍ଗନବାଡ଼ି ଓ ବ୍ୟକ୍ତିବିଶେଷଙ୍କୁ ସମ୍ବର୍ଦ୍ଧନା ତଥା ପୁରସ୍କାର ପ୍ରଦାନ,
- ଜିଲ୍ଲା ଓ ରାଜ୍ୟ ସ୍ତରରେ ସମ୍ପୂର୍ଣ୍ଣ ପରିମଳ ଅଭିଯାନ ସଂକ୍ରାନ୍ତୀୟ ପ୍ରଦର୍ଶନୀ ଆୟୋଜନ ।

## ଜଳଧାରା ପୁରସ୍କାରପ୍ରାପ୍ତ ବ୍ୟକ୍ତିମାନଙ୍କ ତାଲିକା

| କ୍ର.ନଂ. | ଜିଲ୍ଲା | ବ୍ଲକ୍‌ର ନାମ | ଯନ୍ତ୍ରୀଙ୍କ ନାମ | ସ୍ଥାପିତ ହୋଇଥିବା ପାଇପ ପାଣି ପ୍ରକଳ୍ପ |
|---|---|---|---|---|
| ୧. | ଖୋର୍ଦ୍ଧା | ଚିଲିକା ଓ ବାଣପୁର | ଇଂ. ପି.ସି. ବେହେରା | ୨୦ |
| ୨. | ଖୋର୍ଦ୍ଧା | ବେଗୁନିଆ | ଇଂ. ଡି.କେ. ମହାନ୍ତି | ୧୬ |

| | | | | |
|---|---|---|---|---|
| ୩. | ଗଜପତି | ମୋହନା | ଇଂ. ଏ. ଚକ୍ରଧର | ୧୫ |
| ୪. | କୋରାପୁଟ | ବୋରିଗୁମ୍ମା | ଇଂ. ଏ.ଏନ୍. ସାହୁ | ୧୫ |
| ୫. | ବରଗଡ଼ | ଅତବିରା | ଇଂ. ଟି. ଅତି | ୧୪ |
| ୬. | ବାଲେଶ୍ୱର | ନୀଳଗିରି | ଇଂ. ଚିତରଂଜନ ପାତ୍ର | ୧୪ |
| ୭. | ଗଜପତି | ଗୁମ୍ମା | ଇଂ. ପ୍ରମୋଦିନୀ ମହାରଣା | ୧୪ |
| ୮. | ନୟାଗଡ଼ | ନୟାଗଡ଼ | ଇଂ. ଏଲ୍. ଦାସ | ୧୩ |
| ୯. | ଖୋର୍ଦ୍ଧା | ବାଲିଅନ୍ତା | ଇଂ. ଏମ୍.ଆର୍. ହୋତା | ୧୩ |
| ୧୦. | ଖୋର୍ଦ୍ଧା | ଟାଙ୍ଗି | ଇଂ. ଏସ୍.କେ. ସାହୁ | ୧୨ |
| ୧୧. | କଟକ | ନରସିଂହପୁର | ଇଂ. ଡି.କେ. ସାହୁ | ୧୨ |
| ୧୨. | ପୁରୀ | ପୁରୀ | ଇଂ. ନୀଳମାଧବ ମହାସେଠୀ | ୧୧ |
| ୧୩. | ଖୋର୍ଦ୍ଧା | ବାଲିପାଟଣା | ଇଂ. ଏନ୍. ପ୍ରଧାନ | ୧୧ |
| ୧୪. | ସୁନ୍ଦରଗଡ଼ | ରାଜଗାଙ୍ଗପୁର ଓ କୁତ୍ରା | ଇଂ. ଏଚ୍.ପି. ଦଳାଇ | ୧୦ |
| ୧୫. | ଖୋର୍ଦ୍ଧା | ବୋଲଗଡ଼ | ଇଂ. ବି.କେ. ରାୟଗୁରୁ | ୧୦ |
| ୧୬. | ଜଗତସିଂହପୁର | ବିରିଡ଼ି | ଇଂ. ଆର୍.ସି. ବେହେରା | ୯ |
| ୧୭. | କଟକ | କଟକ | ଇଂ. ନରେଶ କୁମାର ଦାସ | ୯ |
| ୧୮. | କଟକ | ବାରଙ୍ଗ | ଇଂ. କାଳୁ ଚନ୍ଦ୍ର ବେହେରା | ୯ |
| ୧୯. | ନୟାଗଡ଼ | ଓଡ଼ଗାଁ | ଇଂ. ପି.କେ. ମହାପାତ୍ର | ୯ |
| ୨୦. | ମୟୂରଭଞ୍ଜ | ରାରୁଆଁ | ଇଂ. ଡି. ନାୟକ | ୯ |
| ୨୧. | ନୟାଗଡ଼ | ଦଶପଲ୍ଲା | ଇଂ. ଏସ୍. ଦଳାଇ | ୯ |
| ୨୨. | ନୟାଗଡ଼ | ନୂଆଗାଁ | ଇଂ. ଆର୍.ସି. ମହାପାତ୍ର | ୯ |
| ୨୩. | ଗଜପତି | ଗୋସାଣୀ | ଇଂ. ଏସ୍.ବି. ଚନ୍ଦ୍ର ପାତ୍ର | ୯ |
| ୨୪. | ଜଗତସିଂହପୁର | ରଘୁନାଥପୁର | ଇଂ. ଆର୍.କେ. ସେଠୀ | ୮ |
| ୨୫. | ବାଲେଶ୍ୱର | ରେମୁଣା | ଇଂ. ସୁକୁମାର ନାୟକ | ୮ |
| ୨୬. | ପୁରୀ | ବ୍ରହ୍ମଗିରି ଓ କୃଷ୍ଣପ୍ରସାଦ | ଇଂ. ଚ. ବିନୋଦ ବିହାରୀ ସାହୁ | ୮ |
| ୨୭. | କଟକ | ମାହାଙ୍ଗା | ଇଂ. ବି.କେ. ସେଠୀ | ୮ |
| ୨୮. | କୋରାପୁଟ | ଜୟପୁର | ଇଂ. ଆର୍.କେ. ଘଡେଇ | ୮ |
| ୨୯. | ଜଗତସିଂହପୁର | ତିର୍ତ୍ତୋଲ | ଇଂ. ଆର୍.ଏନ୍. ଜେନା | ୮ |
| ୩୦. | ବରଗଡ଼ | ପଦ୍ମପୁର | ଇଂ. ଏସ୍.ସି. ସାହୁ | ୮ |
| ୩୧. | କଟକ | ଟାଙ୍ଗି-ଚୌଦ୍ୱାର | ଇଂ. ମଳୟ କୁମାର ମିଶ୍ର | ୮ |

| କ୍ର.ନଂ. | ଜିଲ୍ଲା | ବ୍ଲକ୍‌ର ନାମ | ଗ୍ରାମପଞ୍ଚାୟତର ନାମ | ସରପଞ୍ଚଙ୍କ ନାମ (ପରିମଳ ମିତ୍ର ପୁରସ୍କାରପ୍ରାପ୍ତ) | ପୁରସ୍କାର ପରିମାଣ (ଟଙ୍କାରେ) |
|---|---|---|---|---|---|
| ୧. | ଅନୁଗୁଳ | ତାଳଚେର | ଗୋବରା | ଶ୍ରୀମତୀ ପ୍ରତିମା ବେହେରା | ୧୦୦୦୦୦.୦୦ |
| ୨. | ଗଞ୍ଜାମ | ଖଲିକୋଟ | କାଞ୍ଚନ | ଶ୍ରୀ ଜୟସେନ ଘୋଷ | ୧୦୦୦୦୦.୦୦ |
| ୩. | ସମ୍ବଲପୁର | ବାମନା | ଗୋବିନ୍ଦପୁର | ଶ୍ରୀ ଭବାନୀ ଶଙ୍କର ନାଏକ | ୧୦୦୦୦୦.୦୦ |
| ୪. | ଅନୁଗୁଳ | କଣିହା | ସୁସବା | ଶ୍ରୀମତୀ ସଂଯୁକ୍ତା ସାହୁ | ୫୦୦୦୦.୦୦ |
| ୫. | | ତାଳଚେର | ଗୁରୁଜଙ୍ଗୁଳି | ଶ୍ରୀ ମୁରଲୀଧର ବେହେରା | ୫୦୦୦୦.୦୦ |
| ୬. | | ତାଳଚେର | ଜଗନ୍ନାଥପୁର | ଶ୍ରୀ ବିଜୟ କୁମାର ବେହେରା | ୫୦୦୦୦.୦୦ |
| ୭. | ବରଗଡ଼ | ବରଗଡ଼ | ଡୁମରପାଲୀ | ଶ୍ରୀମତୀ ଲୋଚନା ସାହୁ | ୫୦୦୦୦.୦୦ |
| ୮. | | ଗୈସିଲେଟ୍ | କଟାବାହାଲ | ଶ୍ରୀ ଇନ୍ଦ୍ର ପ୍ରଧାନ | ୫୦୦୦୦.୦୦ |
| ୯. | କଟକ | ମାହାଙ୍ଗା | କୁଣ୍ଠି | ଶ୍ରୀ ଧୀରେନ୍ଦ୍ର କୁମାର ସ୍ୱାଇଁ | ୫୦୦୦୦.୦୦ |
| ୧୦. | ଯାଜପୁର | ସୁକିନ୍ଦା | ବନ୍ଧଗାଓଁ | ଶ୍ରୀମତୀ ବନିତା ଦେହୁରୀ | ୫୦୦୦୦.୦୦ |
| ୧୧. | କଳାହାଣ୍ଡି | କେସିଙ୍ଗା | ହାତୀଖୋଜ | ଶ୍ରୀ ନିରଞ୍ଜନ ନନ୍ଦ | ୫୦୦୦୦.୦୦ |
| ୧୨. | କେଉଁଝର | ପାଟଣା | ବାଉଁଶୁଳି | ଶ୍ରୀ ଚନ୍ଦ୍ରଭାନୁ ନାଏକ | ୫୦୦୦୦.୦୦ |
| ୧୩. | ମାଲକାନଗିରି | କୋର୍‌କୋଣ୍ଡା | ତଣ୍ଡାପାଲୀ | କୁମାରୀ ପପିତା ଆଜମେର୍ | ୫୦୦୦୦.୦୦ |
| ୧୪. | | ମାଲକାନଗିରି | ବି.ଏଲ୍.ପୁର | ଶ୍ରୀ ନୀଳକଣ୍ଠ ଝୋଲା | ୫୦୦୦୦.୦୦ |
| ୧୫. | | ମାଲକାନଗିରି | ସିନ୍ଦ୍ରିମାଲ | ଶ୍ରୀମତୀ ଜାନକୀ ଦନ୍ତ କୋଲା | ୫୦୦୦୦.୦୦ |
| ୧୬. | ମୟୂରଭଞ୍ଜ | କରଞ୍ଜିଆ | ଚିତ୍ରପୋଷୀ | ଶ୍ରୀ ଜଗନ୍ନାଥ ନାଏକ | ୫୦୦୦୦.୦୦ |
| ୧୭. | | ବେତନଟୀ | ସାଥୀଲୋ | ଶ୍ରୀ ଲସା ହେମ୍ବ୍ରମ୍ | ୫୦୦୦୦.୦୦ |
| ୧୮. | | ବାହଲଦା | ସୋସୋ | ଶ୍ରୀ ମଦନ ମୋହନ ମାଝୀ | ୫୦୦୦୦.୦୦ |
| ୧୯. | ନୟାଗଡ଼ | ଓଡ଼ଗାଁ | କୋମଣ୍ଡ | ଶ୍ରୀ ନୀଳମଣି ସାହୁ | ୫୦୦୦୦.୦୦ |
| ୨୦. | ନୂଆପଡ଼ା | କୋମନା | ପେଣ୍ଡ୍ରବନ | ଶ୍ରୀମତୀ ସୋହାମୁଖୀ ବେନାଲ | ୫୦୦୦୦.୦୦ |
| ୨୧. | | କୋମନା | କୁରୁମ୍ପୁରି | ଶ୍ରୀ ରାମ ନରେଶ ଅହିର | ୫୦୦୦୦.୦୦ |
| ୨୨. | ସମ୍ବଲପୁର | ରେଙ୍ଗାଲି | ଲଇଡ଼ା | ଶ୍ରୀମତୀ ସୁବର୍ଣ୍ଣା ବେହେରା | ୫୦୦୦୦.୦୦ |
| ୨୩. | ପୁରୀ | ନିମାପଡ଼ା | ଛଣିଜଙ୍ଗ | ଶ୍ରୀମତୀ ଜ୍ୟୋସ୍ନାରାଣୀ ଭୋଇ | ୫୦୦୦୦.୦୦ |
| ୨୪. | | ଗୋପ | ଧୂମାଳ | ଶ୍ରୀ ଜୟନ୍ତ କୁମାର ରାୟ | ୫୦୦୦୦.୦୦ |
| ୨୫. | | କାକଟପୁର | ବାଙ୍ଗୁରିଗାଁ | ଶ୍ରୀମତୀ କାଦମ୍ବରୀ ବେହେରା | ୫୦୦୦୦.୦୦ |
| | | | ମୋଟ | | ୧,୧୦୦,୦୦୦.୦୦ |

# ବର୍ଷାଦିନର ସାଧାରଣ ରୋଗ ପାଇଁ ସତର୍କତା

ଡାକ୍ତର ନିରଞ୍ଜନ ତ୍ରିପାଠୀ

**ଭା**ରତରେ ଆଷାଢ଼ (ଜୁଲାଇ) ମାସରୁ ଆଶ୍ୱିନ (ଅକ୍ଟୋବର) ମାସ ପର୍ଯ୍ୟନ୍ତ ବର୍ଷାକାଳ ଲାଗି ରହେ । 'ବରଷାକାଳ ଅଟେ ଉଦ୍ଭିଦ ମିତ୍ର' । ପ୍ରାଣୀମାନଙ୍କ ମିତ୍ର ମଧ୍ୟ । ଫଳରେ ବର୍ଷା କାଳରେ ଜୀବାଣୁ, ଭୂତାଣୁ, ଛତ୍ରକ, ପରଜୀବୀ, ବିଭିନ୍ନ ପ୍ରକାର କୀଟ, ପତଙ୍ଗ, ମୂଷା, ସାପ, ବିଷାକ୍ତ ତୃଣ, ଗୁଳ୍ମ ତଥା ବୃକ୍ଷମାନଙ୍କ ସଂଖ୍ୟା ବୃଦ୍ଧି ପାଇଥାଏ ।

ଏହା ଫଳରେ ଯେଉଁ ରୋଗଗୁଡ଼ିକ ସୃଷ୍ଟି ହୁଅନ୍ତି, ସେଗୁଡ଼ିକ ହେଲେ - ୧. ଜ୍ୱର, ୨. ଝାଡ଼ା, ପେଟ ଗୋଳମାଳ, ୩. ଥଣ୍ଡା, କାଶ, ଶ୍ୱାସ, ୪. ଦେହ ଦରଜ, ତଣ୍ଟି ଦରଜ, ଗଣ୍ଠି ଦରଜ, ମୁଣ୍ଡ ବିନ୍ଧା, ୫. କାମଳ (ଜଣ୍ଡିସ୍), ୬. ଆଲର୍ଜି, ଆଖିଧରା, ଅଗ୍ୟାବାତ, ୮. କୃମିରୋଗ, ୯. ଦୁର୍ଘଟଣା, ୧୦. ସାପ କାମୁଡ଼ା ।

**ଜ୍ୱର :** ଜ୍ୱର ଗୋଟିଏ ରୋଗ ନୁହେଁ । ଏହା ବହୁ ରୋଗର ଲକ୍ଷଣ । ଥଣ୍ଡାଜ୍ୱର ଇନ୍‌ଫ୍ଲୁଏନ୍‌ଜାଠାରୁ ଆରମ୍ଭ କରି କ୍ୟାନସର, ଏଡ୍‌ସ ପର୍ଯ୍ୟନ୍ତ ବହୁ ରୋଗରେ ଜ୍ୱର ହୋଇଥାଏ । ବର୍ଷା ଦିନରେ ଯେଉଁ ଜ୍ୱର ହୁଏ ତାହା ସାଧାରଣତଃ ଭୂତାଣୁଜନିତ କିମ୍ବା ଟାଇଫଏଡ଼୍ ଭଳି ଜ୍ୱର ହୁଏ । ବର୍ଷାରେ ଦେହ ଓଦା ହୋଇଗଲେ କିମ୍ବା ଗାଧୋଇ ପଡ଼ିଲେ ପ୍ରକୃତରେ ଜ୍ୱର ହୋଇନଥାଏ । ବର୍ଷାରେ ଆମ ଦେଶରେ କୃଷକ ଏବଂ ମାଛଧରାଳୀମାନେ ସବୁବେଳେ ପାଣିରେ ଓଦା ହୋଇ କାର୍ଯ୍ୟ କରିଥାଆନ୍ତି କିନ୍ତୁ ସମସ୍ତଙ୍କର ଜ୍ୱର ହୁଏ ନାହିଁ । ସେହି ସମୟରେ ଭୂତାଣୁ ଜୀବାଣୁ ତଥା ମଶାମାଛିଙ୍କ ସଂଖ୍ୟା ବୃଦ୍ଧି ପାଉଥିବାରୁ ସେମାନଙ୍କ ସାହାଯ୍ୟରେ ଶରୀର ମଧ୍ୟରେ ଜୀବାଣୁ ଭୂତାଣୁ ପ୍ରବେଶ କରି ଜ୍ୱର ସୃଷ୍ଟି କରିଥାଆନ୍ତି ।

ଜ୍ୱର ଆରମ୍ଭ ହେଲେ, ଯଦି ଶରୀରର ତାତି ବହୁତ ବଢ଼ିଯାଏ, ମୁଣ୍ଡ ବିନ୍ଧେ, ଶରୀରରେ ଯନ୍ତ୍ରଣା ବଢ଼ିଯାଏ, ତେବେ ବିଶ୍ରାମ ନେବା ଆବଶ୍ୟକ ତଥା ସରଳ ରୁଚିକର ସୁଷମ ଖାଦ୍ୟ ଖାଇବା ଦରକାର । ଦିନକୁ ତିନି ଲିଟର ସିଝା ପାଣି ଥଣ୍ଡା କରି ପିଇବା ଆବଶ୍ୟକ । ଯନ୍ତ୍ରଣା ଅଧିକ ହେଲେ ପାରାସିଟାମଲ୍ ବଟିକା କିଣି ଖିଆଯାଇପାରେ । ଥର୍ମୋମିଟରରେ ଜ୍ୱର ମାପି ରଖିବା ଉଚିତ୍ । ଶୀତ କମ୍ପ ଲାଗି ରହିଲେ ପ୍ରଥମ, ଦ୍ୱିତୀୟ ଦିନରୁ ମ୍ୟାଲେରିଆ ପାଇଁ ରକ୍ତ ପରୀକ୍ଷା, ସାଧାରଣ ରକ୍ତ ଓ ପରିସ୍ରା ପରୀକ୍ଷା କରିବା ଆବଶ୍ୟକ । ଜ୍ୱର ନ ଛାଡ଼ିଲେ ସାତ ଦିନ ବେଳକୁ ଟାଇଫଏଡ଼୍ ପାଇଁ ରକ୍ତ ପରୀକ୍ଷା ଆବଶ୍ୟକ ହୋଇପାରେ ।

କିନ୍ତୁ ମନେ ରଖନ୍ତୁ, ବର୍ଷା ଦିନରେ ହେଉଥିବା ଜ୍ୱର ମୁଖ୍ୟତଃ ଭାଇରସ୍‌ଜନିତ ହେଉଥିବାରୁ ପାଞ୍ଚ ସାତ ଦିନ ମଧ୍ୟରେ ଏମାନେ ଆପେ ଆପେ ବିନା ଔଷଧରେ ଭଲ ହୋଇଯାଆନ୍ତି । ଶରୀର ପୀଡ଼ା ହେଲେ ସୋରିଷ ତେଲ ରସୁଣ ଫୁଟାଇ ଗୋଡ଼ରେ ଘସି ଦେଲେ ଉପକାର ମିଳିଥାଏ ।

**ଝାଡ଼ା, ଜ୍ୱର, ପେଟ ଗୋଳମାଳ :** ବର୍ଷାଦିନରେ ଝାଡ଼ା, ଜ୍ୱର, ପେଟ ଗୋଳମାଳ ଅଧିକ ଦେଖାଯାଏ । ଏହାସବୁ ଆପେ ଆପେ ସାତ ଦିନ ମଧ୍ୟରେ ବିନା ଔଷଧରେ ଭଲ ହୋଇଥାଆନ୍ତି । ଏହି ସମୟରେ ଘୋଳଦହି, ଚିନି, ଲୁଣ, ଲେମ୍ବୁପାଣି ଘୋଳ କରି କିମ୍ବା ଓ.ଆର୍.ଏସ୍. ପାଉଡ଼ର ସିଝାପାଣିରେ ଗୋଳାଇ ବାରମ୍ବାର ପିଇବା ଉଚିତ୍ । ଦୁଇ ତିନି ଦିନ ମଧ୍ୟରେ ଝାଡ଼ା ଆୟତ ନ ହେଲେ ଝାଡ଼ା ପରୀକ୍ଷା କରାଇ ଆବଶ୍ୟକୀୟ ଔଷଧ ଖାଇବା ଭଲ । ଛୁଆମାନଙ୍କର ଝାଡ଼ା ହେଉଥିଲେ ସ୍ତନ୍ୟପାନରୁ ବିରତ କରାଇବା ଭଲ ନୁହେଁ । ଝାଡ଼ା ବାନ୍ତି ଅଧିକ ହୋଇ ରୋଗୀ ଦୁର୍ବଳ ହୋଇ ପଡ଼ିଲେ ଶୀରାରେ ସାଲାଇନ୍ ଇଞ୍ଜେକ୍‌ସନ୍ ଲଗାଇବା ସର୍ବାଦୌ ଆବଶ୍ୟକ ।

**ଜଣ୍ଡିସ୍ (କାମଳ ରୋଗ) :** ବର୍ଷାଦିନେ କାମଳରୋଗ ଅଧିକ ହୁଏ । ଏହି ରୋଗରେ ଜ୍ୱର ହୁଏ, ଭୋକ ହୁଏ ନାହିଁ । ପେଟ ଦରଜ ଲାଗେ । ପରିସ୍ରା ହଳଦିଆ ହୁଏ । ଏହି ପ୍ରକାର ଜଣ୍ଡିସ୍ ମୁଖ୍ୟତଃ 'ହେପାଟାଇଟିସ୍-ଏ' ଭାଇରସ୍‌ଦ୍ୱାରା ସଂକ୍ରମିତ ହୁଏ । ଏହି ଭୂତାଣୁମାନେ ଖାଦ୍ୟ, ପାନୀୟ, ମାଛିମାନଙ୍କଦ୍ୱାରା ସଂକ୍ରମିତ ହୋଇ ଥାଆନ୍ତି । ଜଣ୍ଡିସ୍ ଭୋଗୁଥିବା ଲୋକମାନେ ବାହାରେ ଝାଡ଼ା, ପରିସ୍ରା କରି ପୋଖରୀରେ ଶୌଚ ହେଲେ ଭୂତାଣୁମାନେ ସହଜରେ ସବୁଆଡ଼େ ବ୍ୟାପି ଯାଆନ୍ତି । ଏହି ଦୂଷିତ ପାଣି ପିଇଲେ, ଖାଦ୍ୟରେ ଖାଇଲେ ଏହା ସୁସ୍ଥ ମଣିଷକୁ ପନ୍ଦର ଦିନ ମଧ୍ୟରେ ରୋଗଗ୍ରସ୍ତ କରାଏ । ଜଣ୍ଡିସ୍ ହେଲେ ସରଳ ସୁଷମ ଖାଦ୍ୟ, ଅଧିକ ଭାତ, ରୁଟି ଖାଇବା ଭଲ । ବେଶୀ ତେଲ ମସଲା ଖାଇବା ଉଚିତ୍ ନୁହେଁ । ଲୁଣ ହଳଦୀ ବନ୍ଦ କରିବା ଆବଶ୍ୟକ ନୁହେଁ । ଏହା ଭୂତାଣୁ ଜନିତ ରୋଗ ହୋଇଥିବାରୁ ଝଡ଼ା, ଫୁଙ୍କା,

ଗୁଣୀ ଗାରେଡ଼ି, ତାବିଜ ବାନ୍ଧିବାରେ କୌଣସି ସୁଫଳ ମିଳେ ନାହିଁ । ଏଲୋପାଥିରେ ଚିକିତ୍ସା ନାହିଁ କହି ଅନାବଶ୍ୟକ ଚେରମୂଳି ଖାଇବା, ମନ୍ତ୍ର ପାଠ କରିବା ବେଳେ ବେଳେ ଯକୃତକୁ ଅଧିକ କ୍ଷତିଗ୍ରସ୍ତ କରିଥାଏ ।

ଜଣ୍ଡିସ୍ ଯକୃତ (ଲିଭର)ର ରୋଗ । ଏହି ରୋଗରେ ଲିଭର ରୁଗ୍‌ଣ ହୋଇ ବିଲି ରୁବିନ୍ ଭଳି ଏକ ପଦାର୍ଥ ଅଧିକ ନିର୍ଗତ କରାଏ । ଏହାରି ପ୍ରଭାବରେ ଶରୀର ହଳଦିଆ ହୋଇଥାଏ । ହେପାଟାଇଟିସ୍-ଏ ଓ ବି ଉଭୟ ପାଇଁ ଟୀକା ବାହାରିଲାଣି । ସେଭଳି ଟୀକାର ସଦୁପଯୋଗ ହେବା ଆବଶ୍ୟକ ।

**ଆଲର୍ଜି, କାଶ, ଶ୍ୱାସ :** ବର୍ଷାଦିନେ ଆଲର୍ଜି ଯୋଗୁଁ କାଶ ଲାଗି ରହିବା, ଶ୍ୱାସ ରୋଗୀମାନଙ୍କର ଶ୍ୱାସ ଓ ଦମା ବଢ଼ିଯିବା, ଦେହରେ ଅଗ୍ୟାବାତ ଫଳିଯିବା, କୋଳଗାତ ଚର୍ମ ଓ ନଖରେ ଯାଦୁ ହେବା, ଆଙ୍ଗୁଳି ସନ୍ଧିରେ ପାଣି ଖାଇବା, ନଖ ଯାଦୁ, କଣନଖା ହୋଇ ଯନ୍ତ୍ରଣା ଦେବା, ପୋକଜୋକ କାମୁଡ଼ି ଘା' ହେବା, ଗେଣ୍ଡା ଶାମୁକା ସବୁ ଗୋଡ଼ କାଟି ଦେବା, ଘା' ନ ଶୁଖି ଅଧିକ ପୂଜ ହେବା ସାଧାରଣ ଘଟଣା । ଏହି ରୋଗସବୁ ଅତି ସହଜରେ ପ୍ରାଥମିକ ଚିକିତ୍ସାରେ ଭଲ ହୋଇଯାଆନ୍ତି । ଗାଧୋଇଲାବେଳେ ସାବୁନ ଲଗାଇ ଗାଧୋଇବା, ରାତିରେ ଶୋଇଲାବେଳେ ଗୋଡ଼ ହାତ ନଖରେ ନଡ଼ିଆ ତେଲ ଲଗାଇ ଶୋଇଲେ ଚର୍ମ ରୋଗରୁ ସୁରକ୍ଷା ମିଳିଥାଏ । ମଶା କାମୁଡ଼ାରୁ ରକ୍ଷା ପାଇଁ ମଶାବତୀ ଓ ମଶାରି ବ୍ୟବହାର କରିବା, ହଳଦୀ ଚନ୍ଦନ ଲଗାଇବା ଆରାମଦାୟକ । ଅଧିକ ଶ୍ୱାସରେ ଦମା ପେଲିଲେ 'ଇନ୍‌ହେଲର' ବ୍ୟବହାର ପାଇଁ ପରାମର୍ଶ କରିବା ଉଚିତ୍ ।

**ଦୁର୍ଘଟଣା :** ବର୍ଷାଦିନେ ହୁଲି ଡଙ୍ଗା, ମୋଟର ଲଞ୍ଚ ଦୁର୍ଘଟଣା, ସମୁଦ୍ରରେ ମାଛ ଧରାଳି ନଖୋଜ ହେବା, ରାସ୍ତାରେ ଗାଡ଼ି ମୋଟର ଦୁର୍ଘଟଣା, ନଦୀ ବଢ଼ିରେ ବୁଡ଼ିଯିବା, ଭାସିଯିବା, ପୋଖରୀ, ନାଳରେ ବୁଡ଼ିଯିବା, ଅସାବଧାନତା ତଥା ବାତ୍ୟା ବନ୍ୟାର ଆଉ ଏକ ବିଭୀଷିକା । ମାଟି ଧଷି ପୋତି ହୋଇଯିବା, ଘର କାନ୍ଥ ପଡ଼ି ମରିଯିବା, ଘଡ଼ଘଡ଼ି ଚଡ଼ଚଡ଼ିରେ ମରିଯିବା, ବିଜୁଳି ମାରି ପୋଡ଼ିଯିବାରେ ବହୁ ଲୋକଙ୍କର ଅକାଳ ମୃତ୍ୟୁ ହୋଇଥାଏ । ଏଥିପାଇଁ ସବୁ ଲୋକ 'ପ୍ରାଥମିକ ଚିକିତ୍ସା' ସମ୍ବନ୍ଧରେ ଶିକ୍ଷାଲାଭ କରିବା ଆବଶ୍ୟକ । ହାଇସ୍କୁଲ ପରୀକ୍ଷା ସରିଲା ବେଳକୁ ପ୍ରତ୍ୟେକ ଛାତ୍ରଛାତ୍ରୀ 'ଫାଷ୍ଟ ଏଡ୍' ସମ୍ବନ୍ଧରେ ପ୍ରାକ୍ଟିକାଲରେ ଉତ୍ତୀର୍ଣ୍ଣ ହେବା ବାଧତାମୂଳକ ହେବା ବର୍ତ୍ତମାନ ଜରୁରୀ ହୋଇ ଗଲାଣି । ବୁଡ଼ିଯିବା, ପୋଡ଼ିଯିବା, ରାସ୍ତା ଦୁର୍ଘଟଣାରେ ମୁଣ୍ଡ ଆଘାତ, ହାଡ଼ଭଙ୍ଗା, ଅଚେତ ରୋଗୀର ପ୍ରାଥମିକ ଯତ୍ନ ସମ୍ବନ୍ଧରେ 'ସର୍ବଶିକ୍ଷା' ଜାଗରଣ ମାଧ୍ୟମରେ ପଢ଼ାଇବା ଉଚିତ୍ ।

**କୃମି ରୋଗ, ନାଳ ଶୂଳା ଝାଡ଼ା :** ବହୁ ଲୋକ ପାଇଖାନା ବ୍ୟବହାର କରୁ ନଥିବାରୁ କୃମି ରୋଗ, ବିଭିନ୍ନ ପ୍ରକାରର ଝାଡ଼ା ରୋଗ ଆମ ରାଜ୍ୟରେ ଅଧିକ । 'ଆଲ୍‌ବେଣ୍ଡାଜୋଲ୍' ନାମକ ଗୋଟିଏ କୃମି ବଟିକା ଖାଇଲେ ହୁକ୍ ୱାର୍ମ (ଅଙ୍କୁଶ କୃମି), କେଞ୍ଚୁଆ (ରାଉଣ୍ଡୱାର୍ମ), ଦସୀପୋକ ଭଳି ଛଅ ପ୍ରକାର କୃମି ମରିଯାଆନ୍ତି । ପାଣି ଦୈନିକ ଗରମ କରି ପରେ ଥଣ୍ଡା କରି ପିଇଲେ ନଚେତ୍ ଫିଲଟର୍ ପାଣି ବ୍ୟବହାର କଲେ, ବଢ଼ି ସମୟରେ କୂଅ ପାଣିରେ ବ୍ଲିଚିଙ୍ଗ ପାଉଡ଼ର ବ୍ୟବହାର କଲେ ଝାଡ଼ା ରୋଗ ଓ ପେଟ ରୋଗରୁ ସୁରକ୍ଷା ମିଳିଥାଏ ।

**ସାପ କାମୁଡ଼ା :** ଭାରତରେ କୋଡ଼ିଏ ହଜାରରୁ ଅଧିକ ଲୋକ ପ୍ରତିବର୍ଷ ସାପ କାମୁଡ଼ାରେ ମୃତ୍ୟୁବରଣ କରିଥାଆନ୍ତି । ବର୍ଷାଦିନେ ପାଣି ସାପ ଗାତ ଭିତରେ ପଶି ଯାଉଥିବାରୁ ସାପ ସବୁ ବାହାରକୁ ବାହାରି ଆସନ୍ତି । ବଢ଼ି ସମୟରେ ଜଙ୍ଗଲ ତଥା ସମୁଦ୍ରର ବିଷାକ୍ତ ସାପ ପାଣିରେ ଭାସି ଆସନ୍ତି । ସବୁ ସାପ ବିଷାକ୍ତ ନୁହଁନ୍ତି । ନାଗ, ତମ୍ପ, ବୋଡ଼ା, ଚନ୍ଦନ ପେଡ଼ିଆ ବୋଡ଼ା, ଗୋଖର, ସମୁଦ୍ରର ବିଷାକ୍ତ ସାପ କାମୁଡ଼ିବା ଜାଣି ପାରିଲେ ଝଡ଼ା, ଫୁଙ୍କା, ମନ୍ତ୍ର ପାଠ ନକରି ସାପ ବିଷର ପ୍ରତିରୋଧକ ଔଷଧ ଦେବା ପାଇଁ ସଂଗେସଂଗେ ଡାକ୍ତରଖାନାକୁ ନେଇ ଆସିବା ନିତାନ୍ତ ଆବଶ୍ୟକ । ତାବିଜ ପଦକରେ ଆଦୌ ସମୟ ନଷ୍ଟ କରିବା ଉଚିତ୍ ନୁହେଁ ।

ଭୟ ପାଉଥିବା ଲୋକକୁ ଆଶ୍ୱାସନା ଦେବା, କାମୁଡ଼ିଥିବା ଜାଗା ଉପରକୁ ରକ୍ତ ସଞ୍ଚାଳନ ବନ୍ଦ କରିବା ପାଇଁ ପଟି ବାନ୍ଧିବା, ପାଖ ଡାକ୍ତରଖାନାରେ ସାପବିଷ କାମୁଡ଼ା ସ୍ଥାନ କାଟି ଗହୀର କଲେ ସୁଫଳ ମିଳିଥାଏ ।

ବର୍ଷାଦିନରେ ବହୁ ପ୍ରକାର ରୋଗ ବୃଦ୍ଧି ହେଉଥିବାରୁ ଏଥିରେ ଜନସାଧାରଣ ତଥା ସରକାରଙ୍କ ପକ୍ଷରୁ କୋଟି କୋଟି ଟଙ୍କା ଖର୍ଚ୍ଚ ହୋଇଥାଏ । ସ୍ୱାସ୍ଥ୍ୟରକ୍ଷାର ସାଧାରଣ ଯତ୍ନ ଯଥା- ଆହାର, ବିହାର, ଆଚାର, ବିଚାର ଠିକ୍ ରହିଲେ ରୋଗ ତଥା ପାରିପାର୍ଶ୍ୱିକ ବିପତ୍ତିରୁ ସୁରକ୍ଷା ମିଳିଥାଏ ।

ନିମ ସାହି
କଟକ

# ସମ୍ବାଦ ପରିକ୍ରମା

## କଟକର ସ୍ୱରାଜ ଆଶ୍ରମକୁ ଗାନ୍ଧିଜୀଙ୍କ ସ୍ମାରକୀ ଐତିହାସିକ ପୀଠରେ ପରିଣତ କରାଯିବ : ମନ୍ତ୍ରୀ

ଭାରତ ସ୍ୱାଧୀନତା ସଂଗ୍ରାମର କର୍ଣ୍ଣଧାର ମହାତ୍ମା ଗାନ୍ଧୀଙ୍କ ସ୍ୱରାଜ ଆଶ୍ରମ କଟକକୁ ଗାନ୍ଧୀଙ୍କ ଚିନ୍ତାଧାରାର ଏକ ଐତିହାସିକ ସ୍ମାରକୀ ସ୍ଥଳରେ ପରିଣତ କରିବା ପାଇଁ ସଚିବାଳୟ ଦ୍ୱିତୀୟ ମହଲା ସମ୍ମିଳନୀ କକ୍ଷରେ ଶକ୍ତି, ସୂଚନା ପ୍ରଯୁକ୍ତି ଓ ସଂସ୍କୃତି ମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଏକ ବୈଠକ ଅନୁଷ୍ଠିତ ହୋଇଯାଇଛି । **ମହାତ୍ମା ଗାନ୍ଧୀ ସ୍ୱାଧୀନତା ଆନ୍ଦୋଳନ ସମୟରେ ଓଡ଼ିଶାକୁ ସାତଥର ଆସି ଏହି ସ୍ମରଣୀୟ ସ୍ଥଳରେ ଅବସ୍ଥାନ କରି ସ୍ୱାଧୀନତାର କାର୍ଯ୍ୟକ୍ରମ ପ୍ରସ୍ତୁତ କରୁଥିଲେ ଓ ଓଡ଼ିଶାର ବିଭିନ୍ନ ସ୍ଥାନକୁ ପଦଯାତ୍ରା କରିଥିଲେ । ଏହି ସ୍ମୃତିକୁ ଜନମାନସରେ ଉଦ୍‌ଜୀବିତ କରି ରଖିବା ପାଇଁ ସ୍ୱରାଜ ଆଶ୍ରମକୁ ସ୍ମାରକୀରେ ପରିଣତ କରାଯିବାକୁ ସ୍ଥିର କରାଯାଇଛି । ଏହି ସ୍ମାରକୀ ନିମନ୍ତେ ୩ କୋଟି ୫୦ ଲକ୍ଷ ଟଙ୍କାର ଏକ ଅଟକଳ କେନ୍ଦ୍ର ସରକାରଙ୍କୁ ଅନୁଦାନ ପାଇଁ ପ୍ରସ୍ତାବ ପଠାଯିବାକୁ ସ୍ଥିର ହୋଇଛି ।**

ପାବକ କାନୁନ୍‌ଗୋଙ୍କଦ୍ୱାରା ଲେଖାଯାଇଥିବା ପୁସ୍ତକ 'ଗାନ୍ଧୀ ଓ ଓଡ଼ିଶା'କୁ ଇଂରାଜୀ ଓ ହିନ୍ଦୀ ଭାଷାରେ ଅନୁବାଦ କରାଯିବା ପାଇଁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ତତ୍‌ସଂଗେ ସଂଗେ ମହାତ୍ମା ଗାନ୍ଧୀଙ୍କ ପଦଯାତ୍ରା ସମୟର ବିଭିନ୍ନ ଘଟଣାବଳୀକୁ ନାଟକ ଓ ଲେଖା ଆକାରରେ ସଂସ୍କରଣ କରାଯାଇ ଜନସାଧାରଣଙ୍କ ମଧ୍ୟରେ ଗାନ୍ଧୀବାଦୀ ଚିନ୍ତାଧାରା ପ୍ରଚାର ଓ ପ୍ରସାର କରାଯିବାକୁ ସ୍ଥିର କରାଯାଇଥିଲା । ପଦଯାତ୍ରା ସମୟରେ ମହାତ୍ମା ଗାନ୍ଧୀ ଯେଉଁ ସ୍ଥାନକୁ ଯାଇଥିଲେ ଓ କାର୍ଯ୍ୟକ୍ରମ କରିଥିଲେ ସେଠାରେ ଥିବା ସ୍ମୃତିପୀଠ ଓ ସ୍ଥଳମାନଙ୍କର ରକ୍ଷଣାବେକ୍ଷଣ କରିବା ସହିତ ପ୍ରତ୍ନତତ୍ତ୍ୱ ବିଭାଗଦ୍ୱାରା ଫଟୋ ଉଠା ଯିବାପାଇଁ ପ୍ରସ୍ତାବ ଗ୍ରହଣ କରାଯାଇଥିଲା । ମହାତ୍ମା ଗାନ୍ଧୀଙ୍କ ପଦଯାତ୍ରାକୁ ସ୍ମରଣୀୟ କରିବା ପାଇଁ ୧୫ ମିନିଟ୍‌ର ଏକ ପ୍ରାମାଣିକ ଚିତ୍ର ପ୍ରସ୍ତୁତ କରାଯିବା ଓ ଶବ୍ଦ ଓ ଆଲୋକ ମାଧ୍ୟମରେ ଜନସାଧାରଣଙ୍କୁ ସଚେତନ କରାଯିବା ପାଇଁ ସ୍ଥିରୀକୃତ ହୋଇଛି ।

ସ୍ୱାଧୀନତା ସ୍ମାରକୀ ସ୍ୱରାଜ ଆଶ୍ରମର ପୁନରୁଦ୍ଧାର କାର୍ଯ୍ୟ ସଂସ୍କୃତି ବିଭାଗ ଦ୍ୱାରା କରାଯାଇଛି । ଏହି ଆଶ୍ରମ ଓଡ଼ିଶା ରାଜ୍ୟରେ ସ୍ୱାଧୀନତା ସଂଗ୍ରାମର ଏକ ଉତ୍ସ ଥିଲା । ବର୍ତ୍ତମାନ ସ୍ୱରାଜ ଆଶ୍ରମକୁ କାର୍ଯ୍ୟକ୍ଷମ କରିବା ପାଇଁ ମହାତ୍ମା ଗାନ୍ଧୀଙ୍କ ଦଳ ଓ ଓଡ଼ିଶାର ପଦଯାତ୍ରାକୁ ନେଇ ସେଠାରେ ଗାନ୍ଧୀ ଚିନ୍ତାଧାରାର ଏକ ସ୍ଥଳ ଭାବେ ପରିଣତ କରାଯିବ । **ଏହି ଆଶ୍ରମରେ ଚଳିତ ବର୍ଷ ଅକ୍ଟୋବର ମାସ ୨ ତାରିଖ ସୁଦ୍ଧା ଓଡ଼ିଶାର ଦୁଇ ହଜାର ସ୍ୱାଧୀନତା ସଂଗ୍ରାମୀଙ୍କ ଫଟୋଚିତ୍ର ଲଗାଯିବା ପାଇଁ ନିଷ୍ପତ୍ତି ଗ୍ରହଣ କରାଯାଇଛି । ସେଠାରେ ଥିବା ପାଠାଗାରରେ ମହାତ୍ମା ଗାନ୍ଧୀଙ୍କ ଦର୍ଶନ ଉପରେ ଆଧାରିତ ୫୦ ହଜାର ଟଙ୍କାର ପୁସ୍ତକ କ୍ରୟ କରାଯାଇ ରଖାଯିବା ପାଇଁ ସ୍ଥିର କରାଯାଇଛି । ପ୍ରତ୍ୟେକ ମାସରେ ଥରେ ଏହି ଆଶ୍ରମଠାରେ ଗାନ୍ଧୀ ଦର୍ଶନ ଓ ସ୍ୱାଧୀନତା ସଂଗ୍ରାମର ସ୍ମୃତିଚାରଣ ଭାବେ କରାଯିବାକୁ ସ୍ଥିର କରାଗଲା । ଗାନ୍ଧୀ ସ୍ମୃତିର ସ୍ମାରକୀ ନିର୍ମାଣ ନିମନ୍ତେ ମଦୁରାଇ ଓ ଦିଲ୍ଲୀରେ ଥିବା ସଂଗ୍ରହାଳୟଗୁଡ଼ିକ ଏକ ଦଳଦ୍ୱାରା ଦର୍ଶନ କରାଯିବାକୁ ସ୍ଥିର କରାଯାଇଛି ।**

ଏହି ସମସ୍ତ କାର୍ଯ୍ୟକ୍ରମକୁ ସୁପରିଚାଳନା କରିବା ନିମନ୍ତେ ସଂସ୍କୃତି ବିଭାଗ ଶାସନ ସଚିବ ଶ୍ରୀ ବିଜୟ ଚନ୍ଦ୍ର ଜେନାଙ୍କ ଅଧ୍ୟକ୍ଷତାରେ ଏକ କମିଟି ଗଠନ କରାଯାଇଛି । ଅଧ୍ୟକ୍ଷ ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗ ଏହି କମିଟିର ଆବାହକ ରହିବେ ଓ ସ୍ୱାଧୀନତା ସଂଗ୍ରାମୀ ଦୋଳଗୋବିନ୍ଦ ପ୍ରଧାନ ଏବଂ ଆହୁରି ୪ ଜଣ ସ୍ୱାଧୀନତା ସଂଗ୍ରାମୀ, ୫ ଜଣ ଗାନ୍ଧୀବାଦୀ ଲେଖକଙ୍କ ସମେତ ଏମ୍.ପି. ଓ ବିଧାୟକ ତଥା ୫ ଜଣ ପ୍ରଶାସନିକ ଅଧିକାରୀଙ୍କୁ ଏହାର ସଭ୍ୟ ରଖାଯିବା ପାଇଁ ସ୍ଥିର କରାଯାଇଛି ।

ଏହି ବୈଠକରେ ସଂସ୍କୃତି ତଥା ସୂଚନା ଓ ଲୋକ ସଂପର୍କ ଶାସନ ସଚିବ ଶ୍ରୀ ବିଜୟ ଚନ୍ଦ୍ର ଜେନା ଡେପୁଟି ଡାଇରେକ୍ଟର ଡଃ ବୁଦ୍ଧଦେବ ପଣ୍ଡା, ସ୍ୱାଧୀନତା ସଂଗ୍ରାମୀ ଅନ୍ନପୂର୍ଣ୍ଣା ମହାରଣା, ଦୋଳଗୋବିନ୍ଦ ପ୍ରଧାନ, ପୁରୁଷୋତ୍ତମ ନାଏକ, ଭବାନୀ ପଟ୍ଟନାୟକ, ନିମାପଡ଼ା, ସ୍ୱାଧୀନତା ସଂଗ୍ରାମୀ ରବୀନ୍ଦ୍ରନାଥ ନାୟକ, ଜଗତସିଂହପୁର, ସ୍ୱାଧୀନତା ସଂଗ୍ରାମୀ ବାଇଧର ସ୍ୱାଇଁ, ଢେଙ୍କାନାଳ, ଦିବ୍ୟସୁନ୍ଦର ଦାସ, ଅନୁଗୁଳ, ଲେଖକ ଶ୍ରୀ ପାବକ କାନୁନ୍‌ଗୋ, ବୁଦ୍ଧଦେବ ମିଶ୍ର, ଡଃ ବୈଷ୍ଣବ ଚରଣ ସାମଲ, ପ୍ରଫେସର ବିଜୟ କୁମାର ଶତପଥୀଙ୍କ ସମେତ ସୂଚନା ଓ ଲୋକ ସଂପର୍କ ଅଧିକାରୀ ତଥା ଜିଲ୍ଲା ସଂସ୍କୃତି ଅଧିକାରୀ କଟକ ମହମ୍ମଦ ଇବ୍ରାହିମ ବୈଠକରେ ଯୋଗ ଦେଇଥିଲେ ।

## ସରକାରଙ୍କ ବିନା ଅନୁମତିରେ କୌଣସି ଶିକ୍ଷାନୁଷ୍ଠାନ ଖୋଲାଯାଇ ପାରିବ ନାହିଁ : ଗଣଶିକ୍ଷା ମନ୍ତ୍ରୀ

ଓଡ଼ିଶା ଶିକ୍ଷା ଅଧିନିୟମ ୧୯୬୯ର ଧାରା-୫ ଅନୁଯାୟୀ ସରକାରଙ୍କ ବିନା ଅନୁମତିରେ ରାଜ୍ୟରେ କୌଣସି ଶିକ୍ଷା ଅନୁଷ୍ଠାନ ଖୋଲାଯାଇ ପାରିବ ନାହିଁ ବୋଲି ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗ ପକ୍ଷରୁ ପ୍ରକାଶିତ ପ୍ରେସ୍ ଇସ୍ତାହାରରେ କୁହାଯାଇଛି । ଉକ୍ତ ଧାରା ଅନୁସାରେ ଅନୁଷ୍ଠାନ ଖୋଲାଯିବା ନିମନ୍ତେ ଆବଶ୍ୟକୀୟ ଅନୁମତି ପାଇସାରିଲା ପରେ ଅନୁଷ୍ଠାନ ସ୍ଥାପନ କରି ଧାରା-୬ ଅନୁଯାୟୀ ସ୍ୱୀକୃତ ନିମନ୍ତେ ନିର୍ଦ୍ଧାରିତ ସମୟ ମଧ୍ୟରେ ଆବେଦନ କରିପାରିବେ ବୋଲି ବ୍ୟବସ୍ଥା ରହିଛି ।

କ୍ରମାଗତ ଭାବେ ବିଗତ ଶିକ୍ଷାବର୍ଷଗୁଡ଼ିକରେ ଅଣଅନୁମତି ପ୍ରାପ୍ତ/ଅଣସ୍ୱୀକୃତି ପ୍ରାପ୍ତ ଉଚ୍ଚ ବିଦ୍ୟାଳୟ ତଥା ସଂସ୍କୃତ ବିଦ୍ୟାଳୟ ବା ଟୋଲମାନେ ସେମାନଙ୍କର ଛାତ୍ରଛାତ୍ରୀମାନଙ୍କୁ ପତ୍ର ବିନିମୟ ପାଠ୍ୟକ୍ରମ ମାଧ୍ୟମରେ ବାର୍ଷିକ ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷା ତଥା ପ୍ରଥମା ଓ ମଧ୍ୟମା (ସଂସ୍କୃତ) ପରୀକ୍ଷା ଦେବା ନିମନ୍ତେ ସରକାରଙ୍କୁ ଆବେଦନ କରିବା ପରିପ୍ରେକ୍ଷୀରେ ନିମ୍ନଲିଖିତ ବିଷୟଗୁଡ଼ିକ ସରକାରଙ୍କ ଦୃଷ୍ଟିକୁ ଆସିଅଛି ।

୧. ସଂପୃକ୍ତ ଶିକ୍ଷା ଅନୁଷ୍ଠାନଗୁଡ଼ିକ ଅନୁମତି ନ ପାଇ ଛାତ୍ରଛାତ୍ରୀମାନଙ୍କୁ ସେମାନଙ୍କ ଅନୁଷ୍ଠାନରେ ନାମ ଲେଖାଉଛନ୍ତି । ୨. କେତେକ ଶିକ୍ଷା ଅନୁଷ୍ଠାନ ଅନୁମତି ନିମନ୍ତେ ଆବେଦନ କରି ଅନୁଷ୍ଠାନ ଖୋଲି ଛାତ୍ରଛାତ୍ରୀମାନଙ୍କର ନାମ ଲେଖାଉଛନ୍ତି ଏବଂ ବର୍ଷ ବର୍ଷ ଧରି ଅନୁମତି ଆବେଦନ ପତ୍ର ସଂପର୍କିତ କୌଣସି ତଦନ୍ତ ଫଏସଲା ପାଇଁ ଆବଶ୍ୟକ ପଦକ୍ଷେପ ନେଇନାହାନ୍ତି । ୩. କେତେକ ଶିକ୍ଷାନୁଷ୍ଠାନ କ୍ଷେତ୍ରରେ ସ୍କୁଲ ଗୃହ ନାହିଁ ଏବଂ ନିୟମିତ ଛାତ୍ରଛାତ୍ରୀ ପଢ଼ୁ ନାହାନ୍ତି । ୪. ଶିକ୍ଷାନୁଷ୍ଠାନ ଖୋଲିବା ନିମନ୍ତେ ଅନୁମତି ପାଇ ସାରିଥିଲେ ମଧ୍ୟ ନିର୍ଦ୍ଧାରିତ ସମୟ ମଧ୍ୟରେ ସ୍ୱୀକୃତି ନିମନ୍ତେ ଆବେଦନ ନକରି ବର୍ଷ ବର୍ଷ ଧରି ସ୍ୱୀକୃତି ନିମନ୍ତେ ଆବେଦନ କରୁନାହାନ୍ତି । ୫. ଅଧିକାଂଶ ଶିକ୍ଷାନୁଷ୍ଠାନଗୁଡ଼ିକର କୌଣସି ନିର୍ଦ୍ଧାରିତ ଜମି ସ୍କୁଲଗୃହ, ଆବଶ୍ୟକୀୟ ଛାତ୍ରଛାତ୍ରୀ ତଥା ଯୋଗ୍ୟ ଶିକ୍ଷକ ଓ ଶିକ୍ଷୟିତ୍ରୀ ନାହାନ୍ତି । ସଂପୃକ୍ତ ଅନୁଷ୍ଠାନଗୁଡ଼ିକ ନାମକୁ ମାତ୍ର ଶିକ୍ଷାନୁଷ୍ଠାନ ଖୋଲିବା ନିମନ୍ତେ ଆବେଦନ କରି ଏବଂ ଅଣସ୍ୱୀକୃତି ପ୍ରାପ୍ତ ଶିକ୍ଷାନୁଷ୍ଠାନଗୁଡ଼ିକ ସ୍ୱୀକୃତି ନିମନ୍ତେ ନାମକୁ ମାତ୍ର ଆବେଦନ କରି ବା ନକରି ଦୀର୍ଘ ସମୟ ଧରି ସ୍ୱୀକୃତି ନିମନ୍ତେ କୌଣସି ସର୍ତ୍ତ ପୂରଣ ନକରି ପରୀକ୍ଷା ସମୟରେ ପତ୍ର ବିନିମୟ ପାଠ୍ୟକ୍ରମରେ ଫର୍ମ ପୂରଣ କରିବା ପାଇଁ ସରକାରଙ୍କୁ ଆବେଦନ କରୁଛନ୍ତି ଯଦ୍ଦ୍ୱାରା ନାନା ଅସୁବିଧା ସତ୍ତ୍ୱେ କୋମଳମତି ଛାତ୍ରଛାତ୍ରୀମାନଙ୍କର ଭବିଷ୍ୟତକୁ ଦୃଷ୍ଟିରେ ରଖି ସରକାର ଓଡ଼ିଶା ମାଧ୍ୟମିକ ଶିକ୍ଷା ଅଧିନିୟମ, ୧୯୫୩ ଧାରା ୩୪ ଅନୁସାରେ ଅନୁମତି ପ୍ରଦାନ କରୁଛନ୍ତି । ମାନ୍ୟବର ଉଚ୍ଚନ୍ୟାୟାଳୟ, ୨୫.୦୩.୨୦୦୮ ତାରିଖରେ ଡବ୍ଲ୍ୟୁପି(ସି)ନଂ-୩୩୧୯/୨୦୦୮ ଦେଶର ବିଚାର ସମୟରେ ପତ୍ରବିନିମୟ ପାଠ୍ୟକ୍ରମ ମାଧ୍ୟମରେ ପରୀକ୍ଷା ଦେବା ନିମନ୍ତେ ସରକାରଙ୍କ ଅନୁମତି ପ୍ରଦାନକୁ ତୁରନ୍ତ ବନ୍ଦ କରିବା ନିମନ୍ତେ ଆଦେଶ ପ୍ରଦାନ କରିଛନ୍ତି ।

ଉପରୋକ୍ତ ବିଷୟଗୁଡ଼ିକ ବିଚାର କରି ସରକାର ଓଡ଼ିଶା ମାଧ୍ୟମିକ ଶିକ୍ଷା ଅଧିନିୟମ, ୧୯୫୩ ଧାରା-୩୪ ଅନୁସାରେ ଆଉ କୌଣସି ଅଣଅନୁମତିପ୍ରାପ୍ତ/ଅଣସ୍ୱୀକୃତି ପ୍ରାପ୍ତ ଉଚ୍ଚବିଦ୍ୟାଳୟ ତଥା ପ୍ରଥମା ଓ ମଧ୍ୟମା ସଂସ୍କୃତି ବିଦ୍ୟାଳୟ / ଟୋଲଗୁଡ଼ିକର ଛାତ୍ରଛାତ୍ରୀମାନଙ୍କୁ ଆସନ୍ତା ୨୦୦୯ ମସିହା ତଥା ପରବର୍ତ୍ତୀ ବର୍ଷମାନଙ୍କରେ ହାଇସ୍କୁଲ ସାର୍ଟିଫିକେଟ ପରୀକ୍ଷା / ପ୍ରଥମା ମଧ୍ୟମା ପରୀକ୍ଷାରେ ପତ୍ରବିନିମୟ ପାଠ୍ୟକ୍ରମ ମାଧ୍ୟମରେ ପରୀକ୍ଷା ଦେବା ନିମନ୍ତେ ସ୍ୱତନ୍ତ୍ର ଅନୁମତି ପ୍ରଦାନ କରିବେ ନାହିଁ । ସଂପୃକ୍ତ ଅନୁଷ୍ଠାନର ଛାତ୍ରଛାତ୍ରୀମାନେ ଚଳିତ ଶିକ୍ଷାବର୍ଷ (୨୦୦୮-୦୯)ଠାରୁ ଓଡ଼ିଶା ମାଧ୍ୟମିକ ଶିକ୍ଷା ପରିଷଦ, କଟକଙ୍କ ଦ୍ୱାରା ପରିଚାଳିତ ପତ୍ରବିନିମୟ ପାଠ୍ୟକ୍ରମରେ ଶିକ୍ଷାବର୍ଷ ଆରମ୍ଭରୁ ମାଧ୍ୟମିକ ଶିକ୍ଷା ପରିଷଦର ନିୟମାବଳୀ ଅନୁଯାୟୀ ନାମ ଲେଖାଇ ପରୀକ୍ଷା ଦେଇ ପାରିବେ ନତୁବା ନିକଟସ୍ଥ ସ୍ୱୀକୃତିପ୍ରାପ୍ତ ଉଚ୍ଚ ବିଦ୍ୟାଳୟ/ସଂସ୍କୃତ ଟୋଲମାନଙ୍କରେ ନାମ ଲେଖାଇ ନିୟମିତ ପ୍ରାର୍ଥୀଭାବେ ପରୀକ୍ଷା ଦେଇପାରିବେ ।

ଉପରୋକ୍ତ ପ୍ରେସ୍ ଇସ୍ତାହାର ଅନୁସାରେ ଯଦି ସଂପୃକ୍ତ ଶିକ୍ଷାନୁଷ୍ଠାନ, ଛାତ୍ରଛାତ୍ରୀ ତଥା ଅଭିଭାବକମାନେ ପଦକ୍ଷେପ ଗ୍ରହଣ ନକରନ୍ତି ତେବେ ସରକାର କୌଣସି ଅସୁବିଧା ପାଇଁ ଦାୟୀ ହେବେ ନାହିଁ ବୋଲି ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗରୁ ପ୍ରକାଶିତ ପ୍ରେସ୍ ଇସ୍ତାହାରରେ କୁହାଯାଇଛି ।

# ସେପ୍ଟେମ୍ବର ୩୦ରେ ପୌର କାର୍ଯ୍ୟକାଳ ଶେଷ ହେଉଛି
# ପୌର ନିର୍ବାଚନ ପାଇଁ ସର୍ବଦଳୀୟ ବୈଠକ

ରାଜ୍ୟରେ ପୌର ପରିଷଦ ନିର୍ବାଚନ କରାଯିବା ନେଇ ଗତ ଜୁଲାଇ ୨୭ ତାରିଖରେ ରାଜ୍ୟ ନିର୍ବାଚନ କମିଶନଙ୍କ ପକ୍ଷରୁ ବିଭିନ୍ନ ରାଜନୈତିକ ଦଳମାନଙ୍କର ଏକ ବୈଠକ ଆହୂତ ହୋଇଥିଲା । ରାଜ୍ୟ ନିର୍ବାଚନ କମିଶନ ଶ୍ରୀ ସଂଜୀବ ଚନ୍ଦ୍ର ହୋତା ବୈଠକରେ ଅଧକ୍ଷତା କରି ପୌର ନିର୍ବାଚନ ଅନୁଷ୍ଠିତ ହେବା ସଂପର୍କରେ ସୂଚନା ଦେଇଥିଲେ । ଶ୍ରୀ ହୋତା କହିଥିଲେ ଯେ ମୋଟ ୧୦୩ ଗୋଟି ପୌର ପରିଷଦ ମଧ୍ୟରୁ କଟକ ଓ ଭୁବନେଶ୍ୱର ମହାନଗର ନିଗମ ସମେତ ୯୬ଟି ପୌର ପରିଷଦର ନିର୍ବାଚିତ ପ୍ରତିନିଧିମାନଙ୍କର କାର୍ଯ୍ୟକାଳ ଆସନ୍ତା ସେପ୍ଟେମ୍ବର ୩୦ ତାରିଖରେ ଶେଷ ହେଉଛି । ଏଣୁ ତା' ପୂର୍ବରୁ ଏହି ସମସ୍ତ ପୌର ପରିଷଦଗୁଡ଼ିକରେ ନିର୍ବାଚନ କରାଯିବା କଥା । ତେବେ **ମାନ୍ୟବର ହାଇକୋର୍ଟଙ୍କ ଆଦେଶ ଅନୁଯାୟୀ କଟକ ଓ ଭୁବନେଶ୍ୱର ମହାନଗର ନିଗମ ଏବଂ ବାରିପଦା ପୌର ପରିଷଦର ନିର୍ବାଚନ ବର୍ତ୍ତମାନ କରାଯିବ ନାହିଁ । ୭ଟି ପୌରପରିଷଦର ଅବଧି ଶେଷ ହୋଇ ନାହିଁ । ଏଣୁ ୫୯ ଏନ୍.ଏ.ସି. ଓ ୩୪ଟି ମ୍ୟୁନିସିପାଲିଟି ମୋଟ ୯୩ଟି ପୌର ପରିଷଦ ପାଇଁ ନିର୍ବାଚନ ଅନୁଷ୍ଠିତ ହେବ ।** ଚଳିତ ନିର୍ବାଚନରେ ଭୋଟ ଗ୍ରହଣ ପାଇଁ ଇଲେକ୍‌ଟ୍ରୋନିକ୍ ଭୋଟିଂ ମେସିନ୍ ବ୍ୟବହୃତ ହେବ । ନିର୍ବାଚନରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ପ୍ରାର୍ଥୀମାନଙ୍କୁ ମନୋନୟନ ପତ୍ର ଦାଖଲ କରିବାକୁ ହେବ ଏବଂ ଅସଂପୂର୍ଣ୍ଣ ସତ୍ୟ ପାଠ ଦାଖଲ ଯୋଗୁଁ ମନୋନୟନ ପତ୍ର ନାକଚ ହୋଇଯାଇ ପାରେ ବୋଲି ସେ ସୂଚନା ଦେଇଥିଲେ ।

ପୌର ନିର୍ବାଚନ ପାଇଁ ଆଦର୍ଶ ଆଚରଣ ବିଧି ପାଳନ କରିବା, ପ୍ରଚାର ପାଇଁ ଯାନବାହନ ବ୍ୟବହାର କରାଯିବା ସଂପର୍କରେ ମଧ୍ୟ ଆଲୋଚନା କରାଯାଇଥିଲା । ତେବେ ପ୍ରତି ପ୍ରାର୍ଥୀ ସର୍ବାଧିକ ଦୁଇଟି ୪ ବା ୩ ଚକିଆ ଯାନ ବ୍ୟବହାର କରିପାରିବେ ଏବଂ ସଂପୃକ୍ତ ଦଳ ପକ୍ଷରୁ ପ୍ରତି ପୌର ପରିଷଦରେ ଗୋଟିଏ ଗାଡ଼ି ବ୍ୟବହାର କରିବେ । ଦଳ ପକ୍ଷରୁ ବ୍ୟବହୃତ ଗାଡ଼ିର ଖର୍ଚ୍ଚ ଉକ୍ତ ପୌର ପରିଷଦରେ ପ୍ରତିଦ୍ୱନ୍ଦ୍ୱିତା କରୁଥିବା ସେହି ଦଳର ସମସ୍ତ ପ୍ରାର୍ଥୀଙ୍କ ଖର୍ଚ୍ଚ ହିସାବ କରାଯିବ । ନିର୍ବାଚନ ସମୟରେ ସାଧାରଣ ପର୍ଯ୍ୟବେକ୍ଷକ ନିଯୁକ୍ତ ହେବେ ଏବଂ ପ୍ରଥମ ଥର ପାଇଁ ଓଡ଼ିଶା ଅର୍ଥ ସେବାର ବରିଷ୍ଠ ଅଧିକାରୀଙ୍କୁ ଖର୍ଚ୍ଚ ପର୍ଯ୍ୟବେକ୍ଷକ ଭାବେ ନିଯୁକ୍ତ କରାଯିବ ବୋଲି କମିଶନ ଶ୍ରୀ ହୋତା କହିଥିଲେ । ନିର୍ବାଚନ ପରେ ପିଟିସନ ଦାଖଲ ପାଇଁ ଥିବା ୧୫ ଦିନ ସମୟସୀମାକୁ ଅନ୍ତତଃ ପକ୍ଷେ ୪୫ ଦିନ କରିବା ପାଇଁ ଆଇନରେ ସଂଶୋଧନ ଆଣିବା ନିମନ୍ତେ ରାଜ୍ୟ ସରକାରଙ୍କୁ ସୁପାରିଶ କରିଛନ୍ତି ବୋଲି ପ୍ରକାଶ କରିଥିଲେ । ପ୍ରତି ଜିଲ୍ଲାର ଜିଲ୍ଲା ମାଜିଷ୍ଟ୍ରେଟମାନେ ଇଲେକ୍‌ସନ ଅଫିସର ହୋଇଥିବା ବେଳେ ସୁବିଧା ଦୃଷ୍ଟିରୁ କମିଶନଙ୍କ ପକ୍ଷରୁ ପ୍ରତି ପୌରପାଳିକା ପାଇଁ ଜଣେ ଲେଖାଏଁ ବରିଷ୍ଠ ଅଧିକାରୀଙ୍କୁ ଇଲେକ୍‌ସନ୍ ଅଫିସର ଭାବେ ନିଯୁକ୍ତି ଦିଆଯାଇଛି । ସେମାନେ ଜିଲ୍ଲା ମାଜିଷ୍ଟ୍ରେଟଙ୍କ ତତ୍ତ୍ୱାବଧାନରେ କାର୍ଯ୍ୟ ସଂପାଦନ କରିବେ । ବୈଠକରେ ପ୍ରାର୍ଥୀଙ୍କ ନିର୍ବାଚନ ଖର୍ଚ୍ଚ ସୀମା ନେଇ ଆଲୋଚନା ହୋଇଥିଲା । ରାଜନୈତିକ ଦଳର ପ୍ରତିନିଧିମାନଙ୍କ ମତାମତ ନେଇ ଜଣେ ପ୍ରାର୍ଥୀ ପୂର୍ବରୁ ଥିବା ୫୦ ହଜାର ଜନସଂଖ୍ୟା ପର୍ଯ୍ୟନ୍ତ ପୌର ପରିଷଦରେ ୩୦ ହଜାର ଟଙ୍କା, ୫୦ ହଜାରରୁ ଏକ ଲକ୍ଷ ଜନସଂଖ୍ୟା ପୌର ପରିଷଦରେ ୪୦ ହଜାର ଟଙ୍କା ଏବଂ ଏକ ଲକ୍ଷରୁ ଊର୍ଦ୍ଧ୍ୱ ଜନସଂଖ୍ୟା ପୌର ପରିଷଦରେ ୫୦ ହଜାର ଟଙ୍କା ପର୍ଯ୍ୟନ୍ତ ନିର୍ବାଚନୀ ଖର୍ଚ୍ଚ କରିପାରିବେ ବୋଲି ସହମତି ପ୍ରକାଶ ପାଇଥିଲା । ଆଚରଣ ବିଧିଅବଧି ନେଇ ମଧ୍ୟ ଆଲୋଚନା କରାଯାଇଥିଲା । କେତେକ ରାଜନୈତିକ ଦଳ ପକ୍ଷରୁ ଏହି ଅବଧିକୁ ୪୫ ଦିନ କରାଯିବା ପାଇଁ ଏବଂ କେତେକ ଏହାକୁ ସମ୍ଭାବ୍ୟ ସର୍ବନିମ୍ନ କରିବା ପାଇଁ ମତ ଦେଇଥିଲେ । ଗତ ଥର ଏହା ୩୫ ଦିନ ପାଇଁ ବଳବତ୍ତର ଥିଲା । ତେବେ କମିଶନ ବିଚାର କରି ଏ ସଂପର୍କରେ ନିଷ୍ପତ୍ତି ଗ୍ରହଣ କରିବେ । ନିର୍ବାଚନ ସମୟରେ ଆଚରଣ ବିଧି କଡ଼ାକଡ଼ି ପାଳନ କରାଯିବା ନେଇ ରାଜନୈତିକ ଦଳମାନେ ସହଯୋଗ କରିବାକୁ ଶ୍ରୀ ହୋତା ଅନୁରୋଧ କରିଥିଲେ । ପ୍ରତିଦ୍ୱନ୍ଦ୍ୱିତା କରୁଥିବା ପ୍ରାର୍ଥୀଙ୍କୁ ଜିଲ୍ଲା ନିର୍ବାଚନ ଅଧିକାରୀଙ୍କ ପକ୍ଷରୁ ଚିହ୍ନଟ କାର୍ଡ଼ ପ୍ରଦାନ କରାଯିବ । ଏହି ଆଲୋଚନା ସମୟରେ ରାଜନୈତିକ ଦଳ ପକ୍ଷରୁ ଉପସ୍ଥାପନ କରାଯାଇଥିବା ପ୍ରଶ୍ନ ସଂପର୍କରେ କମିଶନର ଶ୍ରୀ ହୋତା ସ୍ପଷ୍ଟ କରିବା ସହିତ ନିର୍ବାଚନ ପାଇଁ ସେମାନଙ୍କର ପୂର୍ଣ୍ଣ ସହଯୋଗ କାମନା କରିଥିଲେ ।

ରାଜ୍ୟ ନିର୍ବାଚନ କମିଶନ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ଉକ୍ତ ବୈଠକରେ କମିଶନ ସଚିବ ଶ୍ରୀ ଫକୀରଚରଣ ଶତପଥୀ, ସ୍ୱତନ୍ତ୍ର ସଚିବ ଶ୍ରୀ ଗଂଗାଧର ସାହୁ, ଉପଶାସନ ସଚିବ ଶ୍ରୀ ରବୀନ୍ଦ୍ର କୁମାର ସାହୁ ଓ ଆଇନ ଅଧିକାରୀ ଶ୍ରୀ ସତ୍ୟ ରାୟଙ୍କ ସମେତ ଭାରତୀୟ ଜାତୀୟ କଂଗ୍ରେସ, ଭାରତୀୟ ଜନତା ପାର୍ଟି, ବିଜୁ ଜନତା ଦଳ, ସି.ପି.ଆଇ., ସି.ପି.ଆଇ. (ଏମ୍.), ବି.ଏସ୍.ପି., ସି.ପି.ଆଇ. (ଏମ୍.ଏଲ୍.), ଆର୍.ଜେ.ଡ଼ି., ଜେ.ଏମ୍.ଏମ୍., ସମୃଦ୍ଧ ଓଡ଼ିଶା, କଲ୍ୟାଣ ସେନା, ବି.ଜେ.ଏସ୍., ଏସ୍.ପି. ଏବଂ ଜନହିତକାରୀ ପାର୍ଟିର ପ୍ରତିନିଧିମାନେ ଯୋଗ ଦେଇ ଆଲୋଚନାରେ ଅଂଶଗ୍ରହଣ କରିଥିଲେ ।



# faetÿêß Óèÿêtÿ

ଜନ-ଗଣ-ମନ-ଅଧିନାୟକ ଜୟ ହେ

ଭାରତ-ଭାଗ୍ୟ-ବିଧାତା

ପଞ୍ଜାବ-ସିନ୍ଧୁ-ଗୁଜରାଟ-ମରାଠା

ଦ୍ରାବିଡ଼-ଉତ୍କଳ-ବଙ୍ଗ

ବିନ୍ଧ୍ୟ-ହିମାଚଳ-ଯମୁନା-ଗଙ୍ଗା

ଉଚ୍ଛଳ ଜଳଧି ତରଙ୍ଗ

ତବ ଶୁଭ ନାମେ ଜାଗେ

ତବ ଶୁଭ ଆଶିଷ ମାଗେ

ଗାହେ ତବ ଜୟ ଗାଥା

ଜନଗଣ-ମଙ୍ଗଳଦାୟକ ଜୟ ହେ,

ଭାରତ-ଭାଗ୍ୟ-ବିଧାତା

ଜୟ ହେ ଜୟ ହେ ଜୟ ହେ,

ଜୟ ଜୟ ଜୟ ଜୟ ହେ ।

- ରବୀନ୍ଦ୍ରନାଥ ଠାକୁର



# ÿ{¢ÿlaeÿÀÿpú

ସୁଜଳାମ୍, ସୁଫଳାମ୍, ମଳୟଜ ଶୀତଳାମ୍
ଶସ୍ୟ ଶ୍ୟାମଳାମ୍ ମାତରମ୍ ।
ଶୁଭ୍ରଜ୍ୟୋସ୍ନାଂ ପୁଲକିତ ଯାମିନୀମ୍
ଫୁଲ୍ଲ କୁସୁମିତ ଦ୍ରୁମଦଳ ଶୋଭିନୀମ୍
ସୁହାସିନୀମ୍ ସୁମଧୁର ଭାଷିଣୀମ୍
ସୁଖଦାଂ ବରଦାଂ ମାତରମ୍ ।।
ବନ୍ଦେ ମାତରମ୍ ।।।

- ବଙ୍କିମଚନ୍ଦ୍ର ଚାଟାର୍ଜୀ



# ସ୍ୱାଧୀନତା ଦିବସ-୨୦୦୮ ଅବସରରେ
# ଓଡ଼ିଶାର ମାନ୍ୟବର ମୁଖ୍ୟମନ୍ତ୍ରୀ
# **ଶ୍ରୀ ନବୀନ ପଟ୍ଟନାୟକଙ୍କ**
# ଅଭିଭାଷଣ

ସ୍ୱାଧୀନତା ଦିବସର ଶୁଭ ଅବସରରେ ରାଜ୍ୟବାସୀ ଭାଇ ଓ ଭଉଣୀମାନଙ୍କୁ ମୋର ଶୁଭେଚ୍ଛା ଓ ଅଭିନନ୍ଦନ ଜଣାଉଛି ।

ଆଜିର ଏହି ପବିତ୍ର ଅବସରରେ ଜାତିର ପିତା ମହାତ୍ମା ଗାନ୍ଧୀ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ, ପଣ୍ଡିତ ଜବାହରଲାଲ ନେହରୁ, ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ଦାସ, ଉତ୍କଳଗୌରବ ମଧୁସୂଦନ ଦାସ, ଗୋପବନ୍ଧୁ ଚୌଧୁରୀ, ମା' ରମା ଦେବୀ, ଶହୀଦ ଲକ୍ଷ୍ମଣ ନାୟକ ଏବଂ ଅନ୍ୟ ସଂଗ୍ରାମୀମାନଙ୍କ ଉଦ୍ଦେଶ୍ୟରେ ଗଭୀର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଦେଶର ସୁରକ୍ଷା ପାଇଁ ସଂଗ୍ରାମ କରି ଶହୀଦ ହୋଇଥିବା ବୀର ଜବାନମାନଙ୍କ ଉଦ୍ଦେଶ୍ୟରେ ମଧ ଏହି ଅବସରରେ ମୁଁ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଭାରତର ସ୍ୱାଧୀନତା ସଂଗ୍ରାମ ବିଶ୍ୱ ଇତିହାସରେ ଏକ ଗୁରୁତ୍ୱପୂର୍ଣ୍ଣ ଘଟଣା । ସତ୍ୟ ଓ ଅହିଂସାକୁ ଅସ୍ତ୍ର କରି ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଭାରତର ଜନସାଧାରଣ ବ୍ରିଟିଶ ଶାସନ ବିରୋଧରେ ଯେଉଁ ସଂଗ୍ରାମ କରିଥିଲେ, ତା'ର ତୁଳନା ନାହିଁ । ମହାତ୍ମା ଗାନ୍ଧୀଙ୍କର ସତ୍ୟ ଓ ଅହିଂସାର ଅସ୍ତ୍ର ଆଗରେ ଶକ୍ତିଶାଳୀ ବ୍ରିଟିଶ ସରକାର ହାର ମାନିଲେ । ଭାରତର କୋଟି କୋଟି ଜନତାଙ୍କର ବିଜୟ ହେଲା । ଭାରତ ସ୍ୱାଧୀନ ହେଲା । ଆମର ସ୍ୱାଧୀନତା ସଂଗ୍ରାମ ବିଶ୍ୱର ମୁକ୍ତିକାମୀ ଜନତାକୁ ସଂଗ୍ରାମର ଏକ ନୂଆ ମାର୍ଗ ଦେଖାଇଲା ।

ଭାରତର ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଗୁରୁତ୍ୱପୂର୍ଣ୍ଣ ଅବଦାନ ଥିଲା । ୧୮୧୭ ମସିହାରେ ଓଡ଼ିଶାରେ ବକ୍ସି ଜଗବନ୍ଧୁଙ୍କ ନେତୃତ୍ୱରେ ବ୍ରିଟିଶ ସରକାର ବିରୋଧରେ ପ୍ରଥମ ସଂଗ୍ରାମ ହୋଇଥିଲା । ଆମର ବୀର ପାଇକମାନଙ୍କର ଏହି ଆନ୍ଦୋଳନ ବ୍ରିଟିଶ ସରକାରର ନିଦ ହଜାଇ ଦେଇଥିଲା । ୧୮୫୭ର ପ୍ରଥମ ସ୍ୱାଧୀନତା ସଂଗ୍ରାମରେ ବୀର ସୁରେନ୍ଦ୍ର ସାଏ ବ୍ରିଟିଶ ସରକାର ବିରୋଧରେ ଯେଉଁ ସଂଗ୍ରାମ କରିଥିଲେ, ତା'ର ତୁଳନା ନାହିଁ । ୧୮୫୭ରୁ ଆରମ୍ଭ କରି ୧୯୪୨ର ଭାରତଛାଡ଼ ଆନ୍ଦୋଳନ ପର୍ଯ୍ୟନ୍ତ ସ୍ୱାଧୀନତାର ବିଭିନ୍ନ ଫେଜ୍‌ରେ ଓଡ଼ିଶାର ସଂଗ୍ରାମୀମାନେ ଯୋଗ ଦେଇ ଏହି ଆନ୍ଦୋଳନକୁ ଅଧିକ ଶକ୍ତିଶାଳୀ କରିଥିଲେ ।

ଦେଶର ସ୍ୱାଧୀନତା ପାଇଁ ଆମର ସଂଗ୍ରାମୀମାନେ ଯେଉଁ ତ୍ୟାଗ, ସାହସ ଓ ଦେଶଭକ୍ତି ଦେଖାଇଛନ୍ତି, ତାକୁ ଏ ଜାତି କେବେ ଭୁଲି ପାରିବ ନାହିଁ । ସ୍ୱାଧୀନତା ପାଇଁ ସେମାନଙ୍କର ବହୁ ମୂଲ୍ୟ ଅବଦାନ ଆମର ଯୁବ ସମାଜକୁ ସବୁବେଳେ ପ୍ରେରଣା ଯୋଗାଇ ଚାଲିଥିବ ।

ଆଜି ଭାରତ ତା'ର ୬୨ତମ ସ୍ୱାଧୀନତା ଦିବସ ପାଳନ କରୁଛି । ଏହି ୬୧ ବର୍ଷ ଭିତରେ ଦେଶ ତଥା ଆମ ରାଜ୍ୟ ବିଭିନ୍ନ କ୍ଷେତ୍ରରେ ସଫଳତା ହାସଲ କରିଛି । କିନ୍ତୁ ଏହି ୬୧ ବର୍ଷ ଭିତରେ ଗଣତନ୍ତ୍ର ଶାସନ ବ୍ୟବସ୍ଥାରେ ଆମର ସଫଳତା ସାରା ବିଶ୍ୱରେ

ଆମର ସମ୍ମାନ ବଢ଼ାଇଛି । ବହୁ ଧର୍ମ, ଜାତି ଓ ଭାଷାର ଲୋକେ ବାସ କରୁଥିବା ଭାରତ ପରି ବିରାଟ ଦେଶକୁ ଏକାଠି କରିବାରେ ଗଣତନ୍ତ୍ର ସଫଳ ହୋଇଛି । ଜାତୀୟ ଚେତନାର ବିକାଶ ଘଟିଛି ।

ଗଣତନ୍ତ୍ର ସବୁଠାରୁ ଭଲ ଶାସନ ବ୍ୟବସ୍ଥା । ଏଥିରେ ଅଧିକାର ଓ ଦାୟିତ୍ୱ ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ଜନସାଧାରଣ ସେମାନଙ୍କ ଅଧିକାର ବିଷୟରେ ଭଲ ଭାବରେ ସଚେତନ ହୋଇପାରିଲେ ଗଣତନ୍ତ୍ର ମଜବୁତ ହେବ । ଏହି ଅଧିକାର ସହିତ ଆମକୁ ଆମର ଦାୟିତ୍ୱ ପ୍ରତି ମଧ୍ୟ ସଜାଗ ରହିବାକୁ ହେବ । ଦେଶପ୍ରତି ଆମର ଯେଉଁ ପବିତ୍ର ଦାୟିତ୍ୱ ରହିଛି, ତାହା ଆମେ ଠିକ୍ ଭାବରେ ପାଳନ କରିପାରିଲେ, ଆମେ ଏକ ଶକ୍ତିଶାଳୀ ଓ ସମୃଦ୍ଧ ରାଷ୍ଟ୍ର ଗଠନ କରିପାରିବା ।

ମହାତ୍ମା ଗାନ୍ଧୀ କହୁଥିଲେ, ଭାରତ ହେଉଛି ଗାଁର ଦେଶ । ଗାଁରେ ରହିଛି ଭାରତର ଆତ୍ମା । ତେଣୁ ସେ ସବୁବେଳେ ଗାଁର ବିକାଶ ଉପରେ ଜୋର୍ ଦେଇ ଆସୁଥିଲେ । ଗାଁର ଅର୍ଥନୀତି କିପରି ଅଧିକ ମଜବୁତ ହେବ, ତା' ଉପରେ ସେ ଗୁରୁତ୍ୱ ଦେଉଥିଲେ । ଦେଶର ପ୍ରଗତି ପାଇଁ ଗାଁ ଏବଂ ଗାଁରେ ରହୁଥିବା ଲୋକଙ୍କର ଉନ୍ନତି ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସେଥିପାଇଁ କୃଷିର ବିକାଶ ଓ ଗ୍ରାମାଞ୍ଚଳରେ ବିଜୁଳି, ସଡ଼କ ଓ ପାଣି ପରି ଭିତ୍ତିଭୂମିର ବିକାଶ ଜରୁରୀ ।

ସ୍ୱାଧୀନତା ପରେ ଦେଶ ତଥା ଆମ ରାଜ୍ୟ ବିଭିନ୍ନ କ୍ଷେତ୍ରରେ ବିକାଶ ହାସଲ କରିଛି । ଶିକ୍ଷାର ପ୍ରସାର ବଢ଼ିଛି । ଲୋକଙ୍କ ଭିତରେ ସଚେତନତା ଆସିଛି । କିନ୍ତୁ କିଛି ଲୋକ ଏ ପର୍ଯ୍ୟନ୍ତ ବିକାଶର ମୁଖ୍ୟ ଧାରାରେ ସାମିଲ ହୋଇପାରି ନାହାନ୍ତି । ସେମାନଙ୍କ ଉନ୍ନତି ପାଇଁ ମିଳିତ ଉଦ୍ୟମ ହେବା ଦରକାର । ଇକୋନୋମିକ୍ ଫ୍ରିଡମ୍ ବିନା ପଲିଟିକାଲ୍ ଇଣ୍ଡିପେଣ୍ଡେନ୍ସର କିଛି ମୂଲ୍ୟ ନାହିଁ । ତେଣୁ ଗରିବ ଲୋକଙ୍କ ଇକୋନୋମିକ୍ ଏମ୍ପାୱାରମେଣ୍ଟଦ୍ୱାରା ହିଁ ଆମେ ପ୍ରକୃତ ସ୍ୱାଧୀନତା ହାସଲ କରିପାରିବା । ତେଣୁ ଗରିବୀ, ବେକାରୀ ଓ କ୍ଷୁଧା ବିରୋଧରେ ଆମର ସଂଗ୍ରାମକୁ ଆହୁରି ମଜବୁତ କରାଯିବା ଦରକାର । ସମାଜର ସବୁଠାରୁ ଗରିବ ଲୋକ ପାଖରେ ବିକାଶର ସୁଫଳ ପହଞ୍ଚିପାରିଲେ, ଗାନ୍ଧିଜୀଙ୍କ ସ୍ୱପ୍ନର ଭାରତ ସାକାର ହୋଇପାରିବ ।

ସ୍ୱାଧୀନତା ଦିବସ ଆମ ପାଇଁ ସଂକଳ୍ପର ଦିବସ । ଦେଶର ସ୍ୱାଧୀନତାର ସୁରକ୍ଷା ପାଇଁ ଆମେ ଏକଜୁଟ ହୋଇ ରହିବା ସହିତ ଆମ ଦେଶ ଓ ଆମ ରାଜ୍ୟର ବିକାଶ ଓ ସମୃଦ୍ଧି ପାଇଁ କାମ କରିବାକୁ ମୁଁ ଆପଣମାନଙ୍କୁ ଆଜିର ଏହି ପବିତ୍ର ଦିବସରେ ଆହ୍ୱାନ କରୁଛି ।

ଜୟହିନ୍ଦ୍



# ସ୍ୱାଧୀନତା ଦିବସ-୨୦୦୮ ଅବସରରେ
# ଓଡ଼ିଶାର ମହାମାନ୍ୟ ରାଜ୍ୟପାଳ
# **ଶ୍ରୀ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେଙ୍କ**



ପ୍ରିୟ ଭଉଣୀ ଓ ଭାଇମାନେ,

ସ୍ୱାଧୀନତାର ଏକଷଠି ବର୍ଷ ପୂର୍ତ୍ତି ଅବସରରେ ଆପଣମାନଙ୍କୁ ମୋର ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

୧୯୪୭ ମସିହାର ଏହି ଦିନରେ ଆମ ଦେଶ ସ୍ୱାଧୀନତା ହାସଲ କରିଥିଲା । ଆମେ ବ୍ରିଟିଶ ଶାସନରୁ ମୁକ୍ତ ହୋଇଥିଲୁ । ଏହି ଯୁଗାନ୍ତକାରୀ ସଫଳତା ଥିଲା ଏକ ଦୀର୍ଘ ତଥା କଷ୍ଟଦାୟକ ସଂଗ୍ରାମର ଫଳ । ଏହି ସଂଗ୍ରାମ ସମଗ୍ର ବିଶ୍ୱ ଇତିହାସରେ ପ୍ରଥମ ଥର ପାଇଁ ଅହିଂସା ମାର୍ଗରେ ହୋଇଥିବାରୁ ଏହା ଥିଲା ଅସାଧାରଣ । ଆମ ଦେଶର ଶହୀଦମାନଙ୍କ ପ୍ରତି ଆମେ ଆମର ହାର୍ଦ୍ଦିକ କୃତଜ୍ଞତା ଓ ଶ୍ରଦ୍ଧାଞ୍ଜଳି ଜଣାଉଛୁଁ । ସେମାନଙ୍କର ତ୍ୟାଗ ଆମକୁ ସଦାସର୍ବଦା ପ୍ରେରଣା ଦେଇ ଚାଲିଥିବ । ସମାଜ ଓ ରାଷ୍ଟ୍ର ପାଇଁ କାର୍ଯ୍ୟ କରିବାରେ ସେମାନଙ୍କ ଆତ୍ମ ବଳିଦାନର ବୀର ଗାଥା ଆମ ସ୍ମୃତିକୁ ଉଜ୍ଜୀବିତ କରି ରଖିବ ।

ଜାତିର ପିତା ପ୍ରିୟ ବାପୁଜୀଙ୍କୁ ଆମେ ଆଜି ଶ୍ରଦ୍ଧାର ସହିତ ସ୍ମରଣ କରୁଅଛୁଁ । ସେ କେବଳ ଯେ ନିଜର ସତ୍ୟାଗ୍ରହ ଓ ଅହିଂସାର ମାନବୀୟ ଚିନ୍ତାଧାରାଦ୍ୱାରା ଐତିହାସିକ ସ୍ୱାଧୀନତା ସଂଗ୍ରାମକୁ ଦିଗଦର୍ଶନ ଦେଇଥିଲେ ତାହା ନୁହେଁ, ମାନବାଧିକାର କ୍ଷେତ୍ରରେ ବିଶେଷ କରି ପ୍ରତ୍ୟେକ ବ୍ୟକ୍ତିଙ୍କୁ କୌଣସି ସୁବିଧା ସୁଯୋଗରୁ ବଞ୍ଚିତ ନକରି ଓ ବିନା ଭେଦଭାବରେ ମାନବିକ ଅଧିକାର ସହିତ ସମ୍ମାନର ଜୀବନଯାପନ ସୁନିଶ୍ଚିତ କରାଇବାରେ ସେ ଥିଲେ ସମଗ୍ର ବିଶ୍ୱର ଆଦର୍ଶ । ତାଙ୍କର ଆଦର୍ଶ ସମଗ୍ର ଜାତିକୁ ଓ ବିଶ୍ୱର ଅନ୍ୟ ରାଷ୍ଟ୍ରକୁ ସବୁ ସମୟ ପାଇଁ ପ୍ରେରଣା ଦେଇ ଆସୁଥିବ । ସେ ସାଂପ୍ରତିକ ବିଶ୍ୱ ମାନବାଧିକାରର ପ୍ରକୃତ ଜନକ ଥିଲେ । ପଣ୍ଡିତ ଜବାହରଲାଲ ନେହରୁ, ସର୍ଦ୍ଦାର ବଲ୍ଲଭଭାଇ ପଟେଲ, ଡକ୍ଟର ରାଜେନ୍ଦ୍ର ପ୍ରସାଦ, ନେତାଜୀ ସୁଭାଷ ଚନ୍ଦ୍ର ବୋଷ ଓ ଅନ୍ୟ ଯେଉଁମାନେ ସ୍ୱାଧୀନତା ସଂଗ୍ରାମ ଓ ପରବର୍ତ୍ତୀ ସମୟରେ ଆମ ମାତୃଭୂମିର ଭାଗ୍ୟ ନିର୍ଦ୍ଧାରଣ କରିଥିଲେ, ସେମାନଙ୍କୁ ଆମର ଭକ୍ତିପୂତ ଶ୍ରଦ୍ଧାଞ୍ଜଳି ଜଣାଉଛୁଁ ।

ଗାନ୍ଧିଜୀଙ୍କ ଜନଜାଗରଣର ପ୍ରଭାବରୁ ଓଡ଼ିଶା ମଧ୍ୟ ବାଦ ପଡ଼ିନଥିଲା । ସ୍ୱାଧୀନତା ସଂଗ୍ରାମ ସମୟରେ ଗାନ୍ଧିଜୀ ଓଡ଼ିଶାକୁ ଅନେକ ଥର ଆସିଥିଲେ, ପଦଯାତ୍ରା କରିଥିଲେ ଓ ସାଧାରଣ ସଭାମାନଙ୍କରେ ଉଦ୍‌ବୋଧନ ଦେଇଥିଲେ । ଓଡ଼ିଶାର ଦାରିଦ୍ର୍ୟ ଗାନ୍ଧିଜୀଙ୍କ ହୃଦୟରେ ଗଭୀର ରେଖାପାତ କରିଥିଲା ଏବଂ ସେ କହିଥିଲେ, ''ଓଡ଼ିଶାର ଦୁର୍ଭିକ୍ଷ ପ୍ରପୀଡ଼ିତ କଙ୍କାଳସାର ନରନାରୀଙ୍କ ଶରୀର ମୋତେ ମୋ' ସ୍ୱପ୍ନରେ ଓ ଜାଗରଣରେ ବ୍ୟଥିତ କରିଛି । ସେହି କୋଟି କୋଟି ଭୋକିଲା ମଣିଷମାନଙ୍କ ପାଇଁ ଯାହା ଆବଶ୍ୟକ ତାହା ପୂରଣ ହୋଇପାରିଲେ ମୁଁ ଖୁସି ହେବି । ତେବେ ଆମେ ପ୍ରଥମେ ସେମାନଙ୍କୁ ଜୀବନର ମୌଳିକ ଆବଶ୍ୟକତା ଯୋଗାଇଦେବା ପରେ ଜୀବନକୁ ବିକଶିତ କରିବା ପାଇଁ ଅନ୍ୟ ଆବଶ୍ୟକତା ଆପେ ପୂରଣ ହୋଇପାରିବ ।'' ଓଡ଼ିଶା ଓ ଏହାର ଜନସାଧାରଣଙ୍କପ୍ରତି ତାଙ୍କର ଅଗାଧ ସ୍ନେହ, ଶ୍ରଦ୍ଧା ଥିଲା ।

ସ୍ୱାଧୀନତା ସଂଗ୍ରାମରେ ଓଡ଼ିଶାର ଉଲ୍ଲେଖନୀୟ ଅବଦାନ ରହିଛି । ଖୋରଧାର ପାଇକ ବିଦ୍ରୋହ, ସମ୍ବଲପୁର ଓ ଘୁମୁସର ବିଦ୍ରୋହ, ରଣପୁର ବିଦ୍ରୋହ, ଇଞ୍ଚୁଡ଼ିର ଲବଣ ସତ୍ୟାଗ୍ରହ ଓ ରକ୍ତତୀର୍ଥ ଇରମଠାରେ ଦେଶପ୍ରେମୀଙ୍କ ଆତ୍ମ ବଳିଦାନ ଆଦି ଘଟଣା ଓଡ଼ିଶାର ସ୍ୱାଧୀନତା ସଂଗ୍ରାମ ଇତିହାସରେ ଗୌରବମୟ ଅଧ୍ୟାୟ । ଏହା ଓଡ଼ିଆମାନଙ୍କର ମହାନ୍ ବଳିଦାନ ଏବଂ ଜାତୀୟତାବୋଧର ପରିଚୟ ଦିଏ, ଯାହା ଯୁଗ ଯୁଗ ପାଇଁ ଉଦାହରଣ ସୃଷ୍ଟି କରିଛି । ଅପୂର୍ବ ସାହସ ଓ ସଂକଳ୍ପ ନେଇ ଅନେକ ଓଡ଼ିଶାବାସୀ ସେମାନଙ୍କର ଜୀବନ ଉତ୍ସର୍ଗ କରିଛନ୍ତି । ବ୍ରିଟିଶ ଶାସନ ବିରୁଦ୍ଧରେ ସେମାନଙ୍କର ସଂଗ୍ରାମ ଅଠର ଶହ ସତାବନର ବହୁ ପୂର୍ବରୁ ଆରମ୍ଭ ହୋଇଥିଲା । ଜୟୀ ରାଜଗୁରୁ, ବକ୍ସି ଜଗବନ୍ଧୁ, ବୀର ସୁରେନ୍ଦ୍ର ସାଏ, ଉତ୍କଳଗୌରବ ମଧୁସୂଦନ ଦାସ, ଉତ୍କଳମଣି ଗୋପବନ୍ଧୁ ଦାସ, ଲକ୍ଷ୍ମଣ ନାଏକ, ବାଜି ରାଉତ, ରମା ଦେବୀ, ମାଳତୀ ଦେବୀଙ୍କ ପରି ଓଡ଼ିଶାର ଅନେକ ସୁଯୋଗ୍ୟ ସନ୍ତାନମାନଙ୍କର ତ୍ୟାଗରେ ଭାରତର ଇତିହାସ ସମୃଦ୍ଧ ହୋଇଛି । ଆମେ ସେମାନଙ୍କୁ ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛୁଁ ।

ସ୍ୱାଧୀନତା ଦିବସ ଆମ ସମସ୍ତଙ୍କ ପାଇଁ ଏକ ପବିତ୍ର ଦିବସ । ଏହା ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ଆମ ଦେଶପ୍ରେମୀମାନଙ୍କର ମହାନ୍ ସଂଗ୍ରାମ ଓ ଉତ୍ସର୍ଗ ସଂପର୍କରେ ଆମମାନଙ୍କୁ ସ୍ମରଣ କରାଇ ଦିଏ । ସ୍ୱାଧୀନତା ତଥା ଜନସାଧାରଣଙ୍କର ନାଗରିକ ଅଧିକାର ସୁରକ୍ଷା ଏବଂ ରାଷ୍ଟ୍ରର ସାମଗ୍ରିକ ଅଭିବୃଦ୍ଧିର ଉଭୟ ଅର୍ଥନୈତିକ ଓ ସାମାଜିକ ତଥା ସମତୁଲ ବିକାଶ କଠିନ ପରିଶ୍ରମ ଦ୍ୱାରା ସୁନିଶ୍ଚିତ କରାଇବା ଆମର ପ୍ରଧାନ କର୍ତ୍ତବ୍ୟ । ଆସନ୍ତୁ, ତେବେ ଆମେ ସମସ୍ତେ ହାତରେ ହାତ ମିଳାଇ ଶାନ୍ତି, ପ୍ରଗତି ଓ ସମୃଦ୍ଧି ପଥରେ ଆଗେଇ ଯିବା ଓ ଦାରିଦ୍ର୍ୟ ଦୂର କରିବା ।

ଜୟହିନ୍ଦ୍




# ଏକ ଐତିହାସିକ ନିଷ୍ପତ୍ତି

**ଦୀ**ର୍ଘଦିନର ସଂଗ୍ରାମ ଫଳରେ ୧ ୯୩୬ ଅପ୍ରେଲ ପହିଲାରୁ ଭାଷା ଭିତ୍ତିରେ ଓଡ଼ିଶା ସ୍ୱତନ୍ତ୍ର ରାଜ୍ୟରେ ପରିଣତ ହୋଇଛି । ଏହାର ଜନସାଧାରଣ 'ଓଡ଼ିଆ' ଓ ଏହାର ଭାଷା ମଧ୍ୟ ଓଡ଼ିଆ । ଭାରତ ମଧ୍ୟସ୍ଥ ଓଡ଼ିଶା ୧ ୯ ୪୭ ଅଗଷ୍ଟ ୧୫ରୁ ମଧ୍ୟ ସ୍ୱାଧୀନତାର ସ୍ୱାଦ ଲାଭ କରିଥିଲା । ଏହାପରେ ଭାରତ ଶାସନର ବ୍ୟବସ୍ଥାନୁଯାୟୀ ଗଣତାନ୍ତ୍ରିକ ଶାସନ ବ୍ୟବସ୍ଥା ମଧ୍ୟ ଓଡ଼ିଶାରେ ପ୍ରତିଷ୍ଠା ହୋଇଥିଲା ୧ ୯୫୦ରେ । ଅଥଚ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ହେବାର ୭୨ ବର୍ଷ ପରେ କିମ୍ବା ସ୍ୱାଧୀନତାର ୬୦ ବର୍ଷ ବା ସାଧାରଣତନ୍ତ୍ର ୫୭ ବର୍ଷ ପରେ ମଧ୍ୟ ଶୁଦ୍ଧ 'ଓଡ଼ିଶା'କୁ ଲେଖାରେ ବା କଥାରେ 'ଓଡ଼ିଶା' ବା 'ଉଡ଼ିଶା' ବୋଲି ଉଲ୍ଲେଖ କରାଯାଉଥିଲା । ଦୀର୍ଘଦିନ ଧରି 'ଓଡ଼ିଶା' ଲେଖାମାନଙ୍କରେ ବା କଥାବର୍ତ୍ତା ହେଉଛି ବକ୍ତୃତାମାନଙ୍କରେ ଉଡ଼ିଶା ବା ଓରିଶା ହେବାର ଦୁର୍ଭାଗ୍ୟକୁ ଯେପରି ବରଣ କରି ଚାଲିଥିଲା, ତାହା ଶିକ୍ଷିତ ଓ ସଚେତନ ଓଡ଼ିଆମାନଙ୍କ ମନରେ ଗ୍ଳାନି ସୃଷ୍ଟି କରିଥିଲେ ମଧ୍ୟ ସେଥିପାଇଁ କେହି ଆନ୍ଦୋଳନ କରିଥିବା ପରି ମନେହୁଏ ନାହିଁ । ଆମର ସୌଭାଗ୍ୟ ଯେ 'ଓଡ଼ିଶା'କୁ ଅନ୍ୟ ଭାଷାରେ 'ଓରିଶା' ବା 'ଉଡ଼ିଶା' କୁହାନଯିବା ଓ ଲେଖାନଯିବା ପାଇଁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ନେତୃତ୍ୱରେ ରାଜ୍ୟ ସରକାର ଦୃଢ଼ ପଦକ୍ଷେପ ନେଇଛନ୍ତି । ମୁଖ୍ୟମନ୍ତ୍ରୀଙ୍କ ଅଧ୍ୟକ୍ଷତାରେ ଗତ ଜୁନ ୯ ତାରିଖରେ ରାଜ୍ୟ ମନ୍ତ୍ରିମଣ୍ଡଳର ବୈଠକରେ ଏପରି ନିଷ୍ପତ୍ତି ନିଆଗଲା । ନିୟମାନୁଯାୟୀ ତାହା ଭାରତ ସରକାରଙ୍କ ନିକଟକୁ ପଠାଯିବ ଓ ସମ୍ବିଧାନ ସଂଶୋଧନର ବ୍ୟବସ୍ଥା ହେବ ।

ଓଡ଼ିଆ କେବଳ ସରକାରୀ ଭାଷା ହୋଇଗଲେ ଓଡ଼ିଆ ଭାଷାର ସୁରକ୍ଷା ହୋଇଯିବ ବୋଲି କେହି କେହି ଯେପରି ଭାବନ୍ତି ତାହା ଠିକ୍ ନୁହେଁ । ନିଜ ଭାଷା, ସାହିତ୍ୟ ବା ସଂସ୍କୃତିକୁ ନେଇ ଆତ୍ମ ସ୍ୱାଭିମାନ ଓ ଗର୍ବବୋଧ ରହିବା ଆବଶ୍ୟକ । ଓଡ଼ିଶାର ସ୍ୱାର୍ଥରକ୍ଷା ସହିତ ଓଡ଼ିଆ ଭାଷାର ସୁରକ୍ଷା ବିଷୟରେ ଯେଉଁ କେତେଜଣ ଓଡ଼ିଆ ବିଭିନ୍ନ ସଭାସମିତିରେ ବକ୍ତୃତା ଦେଇଥାନ୍ତି କିମ୍ବା ବିଭିନ୍ନ ପତ୍ରପତ୍ରିକାରେ ଲେଖାମାନ ପ୍ରକାଶ କରିଥାନ୍ତି, ସେମାନଙ୍କ ମଧ୍ୟରୁ ଅଧିକାଂଶଙ୍କ ପରିବାରର ପିଲାମାନେ ଓଡ଼ିଆ ସ୍କୁଲରେ ପଢ଼ନ୍ତି ନାହିଁ । ଖାଣ୍ଟି ଓଡ଼ିଶା ଭାଷାରେ କଥାବାର୍ତ୍ତା କରିପାରନ୍ତି ନାହିଁ । ଇଂରାଜୀ ମିଶା ଓଡ଼ିଆ ଭାଷାରେ ସେମାନେ ଘରେ କଥାବାର୍ତ୍ତା ତ କରନ୍ତି । ଓଡ଼ିଆରେ କୌଣସି ପତ୍ର ବା ଦରଖାସ୍ତ ଲେଖିବାକୁ ଉଚ୍ଚଶିକ୍ଷା ପ୍ରାପ୍ତ ପିଲାମାନଙ୍କୁ କହିଲେ ସେମାନେ କୁଣ୍ଠାବୋଧ କରନ୍ତି ।

ଓଡ଼ିଶାର ସହରମାନଙ୍କରେ ପବ୍ଲିକ ସ୍କୁଲର ଇଂରାଜୀ ମାଧ୍ୟମରେ ଯେପରି ଖର୍ଚ୍ଚ ବହୁଳ ଶିକ୍ଷାଦାନର ବ୍ୟବସ୍ଥା ରହିଛି, ସେସବୁ ସ୍କୁଲରେ ନାମ ଲେଖାଇବାକୁ ଓଡ଼ିଆ ପିଲାମାନଙ୍କ ଭିଡ଼ ଓ ପ୍ରତିଯୋଗିତା ପ୍ରତି ଲକ୍ଷ୍ୟ କଲେ ଅବାକ୍ ହେବାକୁ ପଡ଼େ ।

ଶିକ୍ଷିତ ଓଡ଼ିଆମାନଙ୍କ ମଧ୍ୟରୁ ଅଧିକାଂଶ ଓଡ଼ିଆ ପତ୍ରପତ୍ରିକା ବା ସମ୍ବାଦପତ୍ରଠାରୁ ଇଂରାଜୀ ଭାଷାର ସମ୍ବାଦପତ୍ର ବା ପତ୍ରପତ୍ରିକା ପ୍ରତି ଅଧିକ ଆଗ୍ରହ ପ୍ରକାଶ କରି ଆସୁଥିବା ପରିଲକ୍ଷିତ ହୋଇଥାଏ । ଯେଉଁ ଗୋଟିଏ ବା ଦୁଇଟି ଘରୋଇ ଓଡ଼ିଆ ଟି.ଭି. ଚ୍ୟାନେଲ ପ୍ରଚଳିତ, ସେସବୁ ଚାନେଲରେ ଇଂରାଜୀ ମିଶ୍ରିତ ବା ବିକୃତ ଓଡ଼ିଆ ଭାଷା ପ୍ରତି ସମସ୍ତେ ଦେବା ଉଚିତ ।

ଓଡ଼ିଆ ଭାଷାର ସୁରକ୍ଷା ପାଇଁ ରାଜ୍ୟ ସରକାର 'ଓଡ଼ିଆ ଭାଷା ପ୍ରତିଷ୍ଠାନ' ଆରମ୍ଭ କରିବା ସହିତ ଉପାନ୍ତ ଅଞ୍ଚଳରେ ଓ ପ୍ରବାସରେ ଓନିଆ ଭାଷାର ଉନ୍ନତି ପାଇଁ ଉଦ୍ୟମ ଜାରି ରଖିଛନ୍ତି ।

ଅତୀତରେ ବୀର ଓଡ଼ିଆ ଜାତି ଭାବେ ପରିଚିତ ଓଡ଼ିଆମାନେ ଏବେ ଏକବିଂଶ ଶତାବ୍ଦୀରେ ପଦାର୍ପଣ କରିବା ପରେ ସେମାନଙ୍କ ମଧ୍ୟରେ ହୁଏତ ଆବଶ୍ୟକ ପଡୁନଥିବାରୁ ପୂର୍ବରୁ ସେ ଯୁଦ୍ଧ ପ୍ରବଣତା ନାହିଁ । ମାତ୍ର ଓଡ଼ିଶାର ସ୍ୱାର୍ଥରକ୍ଷା ସହିତ ଭାଷା, ସାହିତ୍ୟ ଓ ସଂସ୍କୃତିର ସୁରକ୍ଷା ପାଇଁ ଓଡ଼ିଆମାନେ ସରକାରଙ୍କ ସହିତ ସହଯୋଗ କରି ଏକତ୍ର ହେବାରେ କୌଣସି ଅସୁବିଧା ନାହିଁ । ଓଡ଼ିଶା ଭିତରେ ଯେତେ ନୁହେଁ, ଓଡ଼ିଶା ବାହାରେ ଓଡ଼ିଆମାନଙ୍କ ମଧ୍ୟରେ ସାମାଜିକ ଓ ସାଂସ୍କୃତିକ କ୍ଷେତ୍ରରେ ଏକତା ପରିଲକ୍ଷିତ ହୋଇଥାଏ ।

ମହେନ୍ଦ୍ର ତନୟା ନଦୀ ଉଭୟ ଓଡ଼ିଶା ଓ ଆନ୍ଧ୍ରପ୍ରଦେଶ ଦେଇ ପ୍ରବାହିତ ହୋଇଥିଲେ ହେଁ, ଓଡ଼ିଶାର ସ୍ୱାର୍ଥପ୍ରତି ଦୃଷ୍ଟି ନଦେଇ ଆନ୍ଧ୍ରପ୍ରଦେଶ ସରକାର ଯେପରି ଅଫସୋର ଜଳସେଚନ ପ୍ରକଳ୍ପ ଏକତରଫା ଭାବେ ଆରମ୍ଭ କରି ଦେଲା, ତାହାର ଉପଯୁକ୍ତ ଜବାବ୍ ଦେଇଛନ୍ତି ଓଡ଼ିଶା ଓ ଓଡ଼ିଆଙ୍କ ପକ୍ଷରୁ ଆମ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ । ଗତ ଅପ୍ରେଲ ୩୦ (୨୦୦୮) ତାରିଖରେ ଗଜପତି ଜିଲ୍ଲାରେ ମହେନ୍ଦ୍ର ତନୟା ନଦୀ ଉପରେ ଦୁଇଟି ଆନିକଟ ପ୍ରକଳ୍ପର ଶିଳାନ୍ୟାସ କରି ତାହାର କାର୍ଯ୍ୟ ବର୍ଷକ ମଧ୍ୟରେ ସଂପନ୍ନ କରିବାକୁ ଆମ ମୁଖ୍ୟମନ୍ତ୍ରୀ ଯେପରି ଘୋଷଣା କରିଯାଇଛନ୍ତି, ତାହା ଦକ୍ଷିଣ ଓଡ଼ିଶାର ଅଗଣିତ ଓଡ଼ିଆବାସୀଙ୍କୁ ଆନନ୍ଦିତ କରିଛି । ଏବେ ଆନ୍ଧ୍ରପ୍ରଦେଶ ନରମି ଯାଇ ଓଡ଼ିଶା ସରକାରଙ୍କ ପ୍ରସ୍ତାବାନୁଯାୟୀ ମିଳିତ କ୍ଷେତ୍ର ପରିଦର୍ଶନ ପାଇଁ ରାଜି ହୋଇଛି । ଏହାଛଡ଼ା ଆନ୍ଧ୍ରପ୍ରଦେଶ ସରକାରଙ୍କ ସତେ ଯେପରି ମତାନ୍ତର ନଥିଲା ।